ଚିତ୍ତରଂଜନ ଦାସଙ୍କ ଆଲୋଚନା ସହିତ



# ଅନାମ ଛନ୍ଦ

## କୁମାର ମହାନ୍ତି

# ‘ଅନାମ ଛନ୍ଦ’ ସଂପର୍କରେ ଅଭିମତ

ଗତ ଶତାବ୍ଦୀର ଷଷ୍ଠ ଦଶକରେ ଓଡ଼ିଆ କବିତା ଯେତେବେଳେ ନିଜେ ଖୋଳିଥିବା ଗାତରେ ପଡ଼ି ପଥହରା, ଠିକ୍ ସେତିକି ବେଳେ କୁମାର ମହାନ୍ତି ଏକ ବିକଳ୍ପ ପଥର ସଂଧାନ ଦେଇଥିଲେ ଓଡ଼ିଆ କବିତାରେ। କବିତାର ଶିଳ୍ପରେ ନୂଆ ଐଶ୍ୱର୍ଯ୍ୟର ବାହକ ହୋଇ ଉଠିଥିଲା କୁମାରଙ୍କ କବିତା। ‘ଅନାମ ଛନ୍ଦ’ ଓଡ଼ିଆ କବିତାର ସେଇ ପ୍ରଥମ ନୂଆ ଧୂନ୍। ଓଡ଼ିଆ ପାଠକେ କବିତାରୁ ମୁହଁ ବୁଲେଇ ଫେରି ଯାଉଯାଉ ପୁଣି ଫେରିପଡ଼ି କାନ ତରାଟି ଘେନିଥିଲେ ଅନାମ ଛନ୍ଦର ଏ ତାଜା ସ୍ୱରକୁ।

**– ହୃଷୀକେଶ ମଲ୍ଲିକ**

ବରିଷ୍ଠ କବି, ସଂପାଦକ ଓ ବରିଷ୍ଠ ଅଧ୍ୟାପକ

‘ଅନାମ’ କେବଳ ଏକ କାବ୍ୟ ଆନ୍ଦୋଳନ ନୁହେଁ, ବରଂ ଏହା ‘ନାମବାଲା’ଙ୍କୁ ନାମହୀନ କରେଇବା ଓ ନାଁ ନଥିବାବାଲାଙ୍କୁ ଗୋଟେ ନାଁ ଦେବାର ପ୍ରୟାସ ଥିଲା। ପାଶ୍ଚାତ୍ୟ ଗର୍ଭ ବେଦନାଠାରୁ ଦୂରରେ ରହି ‘ଅନାମ’ ଭୂମିର ଐତିହ୍ୟ ଓ ଆତ୍ମାକୁ ଖୋଜିବାର ପ୍ରୟାସ କରିଥିଲା ଓ ଆପଣାର ନିଜସ୍ୱ ଛନ୍ଦରେ ମଣିଷକୁ ମଣିଷ ସହିତ ଯୋଡ଼ିବାର ଉଦ୍ୟମ କରିଥିଲା। ସେଥିପାଇଁ ‘ଅନାମ’ ହିଁ ସର୍ବଦା ସମଷ୍ଟିର ବର୍ତ୍ତା ପ୍ରଦାନ କରିବାକୁ ଉନ୍ମୁଖ ହୋଇଥାଏ।

**– ଗୌତମ ଜେନା**

ବରିଷ୍ଠ କବି, ସମାଲୋଚକ ଓ ଅଧ୍ୟାପକ

କୁମାର ମହାନ୍ତିଙ୍କ କବିତା ସଂକଳନ ‘ଅନାମ ଛନ୍ଦ’ର କବିତାଗୁଡ଼ିକ ବଡ଼ ଭାବଉଦ୍ଦୀପକ। କବିତାଗୁଡ଼ିକରେ ରହିଛି କୋମଳଭାବ; ସ୍ୱପ୍ନାଚ୍ଛନ୍ନ ମନର ସହଜ ସାବଲୀଳ ପରିପ୍ରକାଶ। ସମଗ୍ର ଓଡ଼ିଶାର ସାହିତ୍ୟିକ, ଗବେଷକ, ଛାତ୍ରଛାତ୍ରୀ ଓ ବୁଦ୍ଧିଜିବୀ ଏ ସଂପର୍କରେ ଗଭୀର ଚର୍ଚ୍ଚା କରିବା ଦରକାର। ଏକ ବିରଳ କବି ପ୍ରତିଭା ଶ୍ରୀ କୁମାର ମହାନ୍ତି। ତାଙ୍କ କବିତାରେ ରହିଛି ଛାତିକୁ ଉଖାରିଦେବାର ଭାବ, ରହିଛି ଅପୂର୍ବ ଜୀବନୀଶକ୍ତି ଓ ଅଭୂତପୂର୍ବ କାବ୍ୟିକ ପ୍ରେରଣା।

**– ଡଃ ଶୁକମୁନି ମେହେର**

ପ୍ରଫେସର, ସମ୍ବଲପୁର ବିଶ୍ୱବିଦ୍ୟାଳୟ

‘ଅନାମ ଛନ୍ଦ’ର କବିତାଗୁଡ଼ିକ ମାନବିକ ସଂପ୍ରୀତି ଓ ଆବେଦନରେ ଭରା। ଯେଉଁଠି କବି ଲୋକଜୀବନର କଥା ଓ ବ୍ୟଥାକୁ ପରସିଛନ୍ତି ଲୋକଶୈଳୀ ଆଧାରରେ। ଏହା ପଢ଼ିବାକୁ ପଡ଼େନାହିଁ, ଆପେ ପଢ଼ି ହୋଇଯାଏ। ତେବେ ଏହି କବିତା ଭିତରେ ପ୍ରବେଶ କଲାପରେ ଆପଣ ମଣିଷ ଓ ମଣିଷପଣିଆକୁ ଯେ ଭେଟିବେ, ଏହା ନିଃସନ୍ଦେହ।

**– ଡଃ ଦେବାଶିଷ ପାତ୍ର**

ସହଯୋଗୀ ପ୍ରଫେସର, ଫକୀରମୋହନ ବିଶ୍ୱବିଦ୍ୟାଳୟ

ଅନାମ ଏକ ଛନ୍ଦ। ଚିରାଚରିତ ସୀମାବଦ୍ଧତାର ଗଡ୍ଡାଳିକା ପ୍ରବାହରୁ ବିଚ୍ୟୁତ ହେବାର ଛନ୍ଦ। ଏ ଛନ୍ଦ ଭାଙ୍ଗିବାର ବେଳାତଟରେ ଯେତିକି ତାଣ୍ଡବାୟିତ ଗଢ଼ିବାର ବେଳାତଟରେ ମଧ୍ୟ

ସେତିକି ଲାସ୍ୟାୟିତ । ଏ ଛନ୍ଦ ସାମାଜିକ ସିଦ୍ଧାନ୍ତ ବହିର୍ଭୂତ ପ୍ରଶ୍ନଶୀଳତାକୁ ନେଇ ଅଜସ୍ର ଜର୍ଜରତା ଅର୍ଜନ କରିଥିଲେ ମଧ୍ୟ ଜୀବନର ବହୁ ଅନାବିଷ୍କୃତ ପରିତଳୀୟ ସମ୍ଭାବନାରେ ସଜୀବ ଏବଂ ସଚଳ । ଅତଏବ ଅନାମ ଏକ ନବୀନ ପରମ୍ପରା । ଏଇ ପରମ୍ପରାର ଜଣେ ଅଫ୍‌ବିଟ୍ ବାହକ ଭାବରେ ଅନାମ ବାୟା କୁମାର ମହାନ୍ତିଙ୍କ କାବ୍ୟିକ ସମ୍ପୃକ୍ତି ମଧ୍ୟ ଓଡ଼ିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ଧାରାର ପରିଚାୟକ ।

**– ଡଃ ରବୀନ୍ଦ୍ର କୁମାର ଦାସ**

ସହାୟକ ପ୍ରଫେସର, ବିଶ୍ୱଭାରତୀ, ଶାନ୍ତିନିକେତନ

ବିଂଶ ଶତାବ୍ଦୀର ସତୁରି ଦଶକରେ ସ୍ୱାଧୀନୋତ୍ତର ସ୍ୱପ୍ନଭଙ୍ଗ ଓ ଜରୁରୀକାଳିନ ପରିସ୍ଥିତି ଭିତରେ ଓଡ଼ିଆ ପ୍ରୟୋଗବାଦୀ କାବ୍ୟପରମ୍ପରାର ଅନ୍ୟତମ ନୀରବ ପ୍ରବହମାନ କାବ୍ୟଧାରାଟି ହେଉଛି ଅନାମ କାବ୍ୟସ୍ୱର । ଏହି କାବ୍ୟଧାରାର ବହୁଲେଖା ଆଜି ଅନୁପଲବ୍ଧ ଥିଲେ ବି ଏହାର ପୁରଧା 'କୁମାର ମହାନ୍ତି'ଙ୍କ ସମସ୍ତ ଲେଖାକୁ ଉଭୟ ଶ୍ରଦ୍ଧା ଓ ଶ୍ରମରୁ ସଂଗ୍ରହ କରିଥିବାରୁ ଅନାମ କବି ମନୁ ଦାଶଙ୍କୁ ମୁଁ ସାଧୁବାଦ ଜଣାଉଛି । ଓଡ଼ିଆ କାବ୍ୟାକାଶରେ ଭିନ୍ନ ଏକ ଦର୍ଶନ ଓ ଆଙ୍ଗିକତାକୁ ବହନ କରୁଥିବା ଭଳି ଅନୁମେୟ ହେଉଥିବା ଏହି କାବ୍ୟସ୍ୱରର ସଫଳ ଆଲୋଚନା ହେଲେ ଏହାର ଅନେକ ଦିଗ ଆଗକୁ ଉନ୍ମୋଚନ ହେବ ।

**– ଡଃ ରୁଦ୍ରନାରାୟଣ ମହାପାତ୍ର**

ସହାୟକ ପ୍ରଫେସର, ଉତ୍କଳ ବିଶ୍ୱବିଦ୍ୟାଳୟ

କୁମାର ମହାନ୍ତି ଅନାମ ଆନ୍ଦୋଳନର ସର୍ଦ୍ଦାର । ଇଏ ଥିଲେ ଏମିତି ସର୍ଦ୍ଦାର ଯିଏ, ସବୁ ମଠ ଓ ସବୁ ପରମ୍ପରାକୁ ଅସ୍ୱୀକାର କରି କବିର ପ୍ରତିବାଦୀ ସତ୍ତାକୁ ଗୋଟେ ନୂଆ ପରିଚୟ ଦେଲେ । ସେ ଯାଏ ଆମେ ପ୍ରତିବାଦୀ କବିତାକୁ ସାମ୍ୟବାଦୀ ବା ପ୍ରଗତିବାଦୀ ବୋଲି କହି ଆସୁଥିଲେ । କୁମାର ମହାନ୍ତିଙ୍କ ପ୍ରତିବାଦ ଥିଲା ଲୋକଛନ୍ଦରେ ଲୋକମାନଙ୍କର ପ୍ରତିବାଦ । ତାଙ୍କ କବିତାରେ ଜଗନ୍ନାଥ ଚେତନା ଓ ପୁରୀର ଚିତ୍ର ରହିଲା, ହେଲେ ସେ ଚିତ୍ରରେ ସମତା ହେଲା ପ୍ରମୁଖ ସ୍ୱର । ଜଗନ୍ନାଥଙ୍କୁ ସମତାର ପ୍ରତୀକ ଏବଂ ପୁରୀକୁ ଆଦିବାସୀ ଜୀବନର ସମାଗମ ବୋଲି ସେ କହିଥିଲେ ।

**– କେଦାର ମିଶ୍ର**

କବି, ସଂପାଦକ ଓ ସାଂସ୍କୃତିକ କାର୍ଯ୍ୟକର୍ତ୍ତା

'ଅନାମ ଛନ୍ଦ'ର କବିତାଗୁଡ଼ିକ ଉପଭୋକ୍ତାବାଦ, ମୂଲ୍ୟବୋଧର ଅବକ୍ଷୟ ପୁଣି ରାଷ୍ଟ୍ରତନ୍ତ୍ରର ନିପୀଡ଼ନ ବିରୁଦ୍ଧରେ କ୍ଷୋଭର ସ୍ଫୁଲିଙ୍ଗ । ଦୃଶ୍ୟମାନ ଦ୍ରୋହ ତଳେ କିନ୍ତୁ ପ୍ରବାହିତ ହୁଏ ଶ୍ରଦ୍ଧାର ଅନ୍ତଃସ୍ରୋତ । କବିତାଗୁଡ଼ିକର ଛନ୍ଦମୟ ଆଙ୍ଗିକ ଯୋଗାଯୋଗକ୍ଷମ ଓ ମୌଳିକ ଓଡ଼ିଆତ୍ୱର ଲକ୍ଷଣ ।

**– ପବିତ୍ର ମୋହନ ଦାଶ**

କବି ଓ ଅଧ୍ୟାପକ, ଶାସ୍ତ୍ରୀ ସ୍ମୃତି ଡିଗ୍ରୀ ମହାବିଦ୍ୟାଳୟ, ପୁରୀ



ଧଉଳି ବୁକ୍ସ
୮୧୮/୨୫୦୨, ଗୋବିନ୍ଦେଶ୍ୱର ରୋଡ, ଓଲ୍ଡ ଟାଉନ
ଭୁବନେଶ୍ୱର, ଓଡ଼ିଶା ୭୫୧୦୦୨

ଅନାମ ଛନ୍ଦ
(କବିତା ସଂକଳନ)

ଲେଖକ: କୁମାର ମହାନ୍ତି

ପ୍ରଥମ ପ୍ରକାଶନ ୨୦୨୦

ପ୍ରଚ୍ଛଦ: ପ୍ରଫୁଲ୍ଲ ମହାନ୍ତି

ଅକ୍ଷର ସଂଯୋଜନା: ପ୍ରଥମ ବହି, କଟକ, ଓଡ଼ିଶା

ମୁଦ୍ରଣ: ଥମ୍‌ସନ୍ ପ୍ରେସ୍ (ଇଣ୍ଡିଆ) ଲିମିଟେଡ୍, ନୂଆ ଦିଲ୍ଲୀ

ଧଉଳି ବୁକ୍ସ ତରଫରୁ ମନୁ ଦାଶଙ୍କ ଦ୍ୱାରା ପ୍ରକାଶିତ

ଆଇ.ଏସ୍.ବି.ଏନ୍. ୯୭୮-୯୩-୮୯୩୮୨-୩୫-୮
ମୂଲ୍ୟ: ₹ ୨୯୫/-

Dhauli Books
(an imprint of Dhauli Review Trust)
Plot 818/2502, Gobindeswar Road, Old Town
Bhubaneswar 751002, Odisha, India
email: contactdhaulibooks@gmail.com
manmohan_dash@yahoo.com

Anama Chhanda
(collection of poems)

Author: Kumar Mohanty

First published in 2020

Cover: Prafulla Mohanty

Typeset by Pratham Bahi, Cuttack, Odisha

Printed and bound by Thomson Press (India) Ltd., New Delhi

Published by Manu Dash for Dhauli Books

ISBN 978-93-89382-35-8
Price : ₹ 295/-

# କିଛି କହିବାର ଅଛି

'ଅନାମ ଛନ୍ଦ' କୁମାର ମହାନ୍ତିଙ୍କର ଦ୍ୱିତୀୟ କବିତା ସଂକଳନ ଯାହା ୧୯୯୪ ମସିହାରେ ପୁରୀର ପ୍ରକାଶନ ସଂସ୍ଥା 'ପ୍ରଜ୍ଞାଲୋକ' ଦ୍ୱାରା ପ୍ରକାଶିତ ହୋଇଥିଲା। ଏବେ ବହିଟି ପ୍ରାୟତଃ ବଜାରରେ ଅନୁପଲବ୍ଧ।

ତେବେ ଏ କବିତା ବହି ଛପାଇବାର ସଂପୂର୍ଣ୍ଣ ଶ୍ରେୟ କେବଳ ଜଣକୁ ଦିଆଯିବ: ଡଃ ବିବୁଧରଂଜନ। ସେ ଜଣେ ମୁଖର ସ୍ତମ୍ଭକାର, କଥାକାର, ଚିତ୍ରଶିଳ୍ପୀ ଓ ଅନାମ କାବ୍ୟ ଆନ୍ଦୋଳନକୁ ମୂଳରୁ ଲକ୍ଷ୍ୟ କରି ଆସୁଥିବା ଶୁଭେଚ୍ଛୁ। କୁମାର ମହାନ୍ତି ଜଣେ ସମ୍ବେଦନଶୀଳ କବି ହୋଇଥିଲେ ମଧ୍ୟ ନିଜ କବିତାର ପ୍ରସାର ଓ ସଂରକ୍ଷଣ ପାଇଁ ସବୁବେଳେ ଥିଲେ ଉଦାସୀନ। ଯଦି ପ୍ରଥମ କବିତା ବହିର ପ୍ରକାଶନ ପରେ ବିବୁଧ ରଂଜନ ଭାଇ, କୁମାର ଭାଇଙ୍କ ଠାରୁ ବାଧ କରି ଏଇ ପାଣ୍ଡୁଲିପିଟି ଆଣି ଛାପି ନଥା'ନ୍ତେ ତେବେ 'ଅନାମ କବିତା'ର ଏକ ସମ୍ଭ୍ରାନ୍ତ ସଂକଳନ ଲୋକଲୋଚନ ଠାରୁ ବହୁ ଦୂରକୁ ଚାଲି ଯାଇଥା'ନ୍ତା। ତେଣୁ ବିବୁଧରଂଜନ ଭାଇଙ୍କ ପାଖରେ ଜଣେ ଅନାମ ଭାବେ ଓ ଏହାର ପୁନଃ ମୁଦ୍ରଣ ପାଇଁ ଉତ୍ସାହିତ କରିଥିବା ଯୋଗୁଁ ମୁଁ କୃତଜ୍ଞ।

ପ୍ରାୟ ୪୦ ବର୍ଷ ତଳେ ଯେତେବେଳେ ମୁଁ ବିଶ୍ୱ ବିଦ୍ୟାଳୟରେ ଓଡ଼ିଆ ସାହିତ୍ୟର ଛାତ୍ର ଥିଲି, ମୋର ଅଧ୍ୟାପକ କବିତାର ସଂଜ୍ଞା ସଂପର୍କରେ ଆଲୋଚନା କରିବାକୁ ଯାଇ କ୍ଲାସ୍‌ରୁମ୍‌ରେ ଟିପାଖାତାରୁ ଇଲିଅଟ୍, ୱାର୍ଡସ୍‌ୱାର୍ଥ, ଶେଲି, ବାଇରନ୍, ମାକ୍‌ଲିସ୍ ଆଦିଙ୍କ ଉଦ୍ଧୃତି ଦେଉଥିଲେ। ଅଥଚ ଇଂରାଜି ଶବ୍ଦକୁ ଠିକ୍‌ଭାବେ ଉଚ୍ଚାରଣ କରିବାର ସାମର୍ଥ୍ୟ ନଥିଲା ତାଙ୍କର। ଜଣେ ଅଧ୍ୟାପକ 'ପେରୁଜାଲ୍'(Perusal)କୁ ବାରମ୍ବାର

'ପରସୁଆଲ୍' କହି ଉପହସିତ ହେଉଥିଲେ ମଧ୍ୟ କେବେ ବି କାଳିଦାସ, ଭବଭୂତି, ବାଣଭଟ୍ଟ ଅଥବା ସାରଳା ଦାସ, ଜଗନ୍ନାଥ ଦାସ, ମାନସିଂ, ଗଡ଼ନାୟକ ଅଥବା ସଚ୍ଚି ରାଉତରାୟଙ୍କୁ ଉଦ୍ଧୃତ କରୁ ନଥିଲେ। ହୀନମନ୍ୟତା ସେତେବେଳେ ଥିଲା, ଏବେ ବି ଅଛି।

'ହୀନମନ୍ୟତା'ର ଆଉ ଏକ ଉଦାହରଣ ଦେବି। ଚଳିତ ବର୍ଷ (୨୦୨୦) ଲୁଇ ଗ୍ଲୁକ୍ (Louise Glück)ଙ୍କୁ କବିତା ପାଇଁ ନୋବେଲ୍ ପୁରସ୍କାର ଦିଆଗଲା। ପୁରସ୍କାର ପାଇବା ଆଗରୁ ତାଙ୍କ ସଂପର୍କରେ ଅଧିକାଂଶ ଲେଖକଙ୍କୁ ଜଣା ନଥିଲା। ତାଙ୍କ କବିତା ନିମ୍ନମାନର ଅର୍ଥାତ୍ ସେ ନୋବେଲ ପୁରସ୍କାର ପାଇବାକୁ ହକ୍‌ଦାର ନୁହଁନ୍ତି ବୋଲି ଭାରତ ତଥା ଓଡ଼ିଶାର ଅନେକ କବି ସେମାନଙ୍କ ଫେସ୍‌ବୁକ୍‌ରେ ଏବେ ମତାମତ ଦେଲେ। ଉକ୍ତ କବିମାନଙ୍କ ମତାମତକୁ ବିରୋଧ କରି ଆଉ କିଛି କବି ଓ ସମାଲୋଚକ ଲୁଇ ଗ୍ଲୁକ୍‌ଙ୍କୁ ସମର୍ଥନ କରି ଲେଖିବା ଆରମ୍ଭ କରିଦେଲେ। କିଛିଦିନ ବାକ୍‌ଯୁଦ୍ଧରେ ଫେସ୍‌ବୁକ୍ ପ୍ରାଙ୍ଗଣଟି ପ୍ରକମ୍ପିତ ହେଲା। କିନ୍ତୁ ଠିକ୍ ସେଇ ସମୟରେ ମାତ୍ର ମାସକତଳେ ଜ୍ଞାନପୀଠ ପୁରସ୍କାର ଗ୍ରହଣ କରିଥିବା ମାଲାୟଲମ୍ କବି ଅକିଥମ୍ ଅଚ୍ୟୁତନ୍ ନମ୍ବୁଥିରିଙ୍କ ଦେହାନ୍ତ ହୋଇଗଲା। ଅଥଚ କେହି ଜଣେ ବି ତାଙ୍କ ଫେସ୍‌ବୁକ୍ ପୃଷ୍ଠାରେ ତାଙ୍କ ସାହିତ୍ୟକୃତି ସଂପର୍କରେ ଆଲୋଚନା କରିବା ତ ଦୂରର କଥା, ଶ୍ରଦ୍ଧାଞ୍ଜଳି ବାଢ଼ିଲେ ନାହିଁ। ପାଶ୍ଚାତ୍ୟ କବି ଓ ଦାର୍ଶନିକମାନଙ୍କୁ ପଢ଼ି ନିଜ ଜ୍ଞାନର ଦିଗ୍‌ବଳୟକୁ ପ୍ରସାରିତ କରିବାରେ ଆପତ୍ତି ନାହିଁ। ମାତ୍ର ନିଜ ମାଟିର ବାସ୍ନାକୁ ଆହୁରି ରସସିକ୍ତ କରିଥିବା କବି ଓ ଲେଖକଙ୍କୁ ଭୁଲିଯିବା ଏକ ପ୍ରକାରର ଅପରାଧ ଓ ରଗ୍‌ଣ ମାନସିକତା।

ଓଡ଼ିଶାରେ ଟି.ଏସ୍. ଇଲିୟଟ୍‌ଙ୍କୁ ନେଇ କବି ଓ ସମାଲୋଚକମାନେ ଯେତିକି ଆଲୋଚନା କରନ୍ତି, ପାଶ୍ଚାତ୍ୟରେ ସେତିକି ଆଲୋଚନା ହୁଏ ନାହିଁ। ଆମେରିକାରେ ଜନ୍ମ ହେଇଥିବାରୁ ବିଲାତରେ ତାଙ୍କ ପ୍ରତି ଏତେଟା ଅନୁରକ୍ତି ଦେଖାଯାଏ ନାହିଁ ଏବଂ ବିଲାତର କବି ହୋଇଥିବାରୁ ଆମେରିକାରେ ସେ ମଧ୍ୟ ଖୁବ୍ ଆଲୋଚିତ ହୁଅନ୍ତି ନାହିଁ। ମାତ୍ର ଓଡ଼ିଶାରେ ? ନିଜ ଚେରକୁ ହତାଦର କରି ମଲାଙ୍ଗ ହେଇ ବଞ୍ଚିବାକୁ ଓଡ଼ିଶାର କବିକୁଳଙ୍କ ଭିତରେ ଖାସ୍ ପ୍ରତିଯୋଗିତା। ସେଇ ଅସୂୟାସଂକ୍ରମିତ ଓଡ଼ିଆ ସାହିତ୍ୟକୁ ନିଜ ଚେର ପାଖକୁ ଟାଣି ଆଣିବାର ପ୍ରୟାସ କରିଥିଲେ କୁମାର ମହାନ୍ତି ଓ ଅନ୍ୟ 'ଅନାମମାନେ'।

କୁମାର ମହାନ୍ତିଙ୍କ କବିତାରେ କେବଳ ଜଗନ୍ନାଥ ତତ୍ତ୍ୱର ବଖାଣ ଓ ପ୍ରତିବାଦର ସ୍ୱର ରହିଛି ବୋଲି ହାଲ୍‌କା ମନ୍ତବ୍ୟମାନ ଶୁଣିବାକୁ ମିଳିଥାଏ। ଯେଉଁମାନେ ତାଙ୍କ କବିତା ପଢ଼ିଛନ୍ତି ଓ ହୃଦୟଙ୍ଗମ କରିଛନ୍ତି ସେମାନେ ଏ ପ୍ରକାର ପ୍ରଳାପରେ ବିଶ୍ୱାସ ରଖନ୍ତିନି।

ନିଜ ସମୟଠାରୁ କୁମାର ମହାନ୍ତି ଥିଲେ ଅନେକ ଆଗରେ। ଓଡ଼ିଆ ସାହିତ୍ୟରେ ଉତ୍ତର-ଆଧୁନିକତା( ?)ର ଅନୁପ୍ରବେଶର ଅନେକ ଆଗରୁ ସେ ଆମ 'ସ୍ଥାନୀୟତା' ପ୍ରତି ମାଡ଼ି ଆସୁଥିବା ଆସନ୍ନ ବିପତ୍ତିରୁ ରକ୍ଷା ପାଇବାଲାଗି ସ୍ୱ-ସଂସ୍କୃତିର ଯେଉଁ ପାଞ୍ଚଜନ୍ୟ ଶୁଣାଇଥିଲେ, ତା'ର ହୁଁ କାରରେ ଅଥର୍ବ ଓଡ଼ିଆ ବୁଦ୍ଧିଜିବୀର ଚେତନା ତ ଚହଲି ଯାଇଥିଲା, ମାତ୍ର ମୋତେ-ଯେତେ-ମାଠିବୁ-ମାଠ ନ୍ୟାୟରେ ପୁଣି ଦୀର୍ଘନିଦ୍ରାକୁ ହିଁ ସ୍ୱାଗତ କଲା। ଉତ୍ତର-ଆଧୁନିକତା ଡିନୋସାରର ସବୁଠୁ ପ୍ରିୟ ଖାଦ୍ୟ ଥିଲା ଆମ ଲୋକଗୀତ, ଲୋକନୃତ୍ୟ, ଲୋକକଥା ଯାହା ଏବେ ନିଶ୍ଚିହ୍ନ ପ୍ରାୟ।

ଏବେ 'ଅନାମ ଛନ୍ଦ' ସଂପର୍କରେ କିଛି କହେ।

'ଅନାମ ଛନ୍ଦ' ବହିରେ ସ୍ଥାନିତ କବିତାଗୁଡ଼ିକ ୧୯୭୪-୧୯୯୪ ମଧ୍ୟରେ ଲେଖା ଯାଇଥିଲା। କାରଣ ୧୯୭୪ ଶେଷ ଭାଗରେ ମୁଁ 'ଅନାମ କାବ୍ୟ ଆନ୍ଦୋଳନ'ରେ ଯୋଗଦେବା ପରେ ପ୍ରାୟ ଏଇ ସବୁ କବିତା ପଢ଼ିଥିଲି। ଏଥିରେ ସ୍ଥାନିତ ଅନେକ କବିତାର ପ୍ରଥମ ଶ୍ରୋତା ହେବାର ସୌଭାଗ୍ୟ ମୋତେ ମିଳିଥିଲା। ଏପରିକି କବିତାଟି କେଉଁ ପରିସ୍ଥିତିରେ କୁମାର ଭାଇ ଲେଖିଥିଲେ ଏହା ସ୍ମୃତିରେ ଏବେ ବି ସତେଜ।

୧୯୯୬ରେ କୁମାର ଭାଇଙ୍କର ଅପ୍ରତ୍ୟାଶିତ ବିୟୋଗ ପରେ ପରେ ତାଙ୍କ ଘରୁ ଅଧ୍ୟାପକ ସଞ୍ଜୟ ଶତପଥୀ ଅନେକ ଅପ୍ରକାଶିତ କବିତା, ଡାଏରୀ ଏବଂ କାଗଜପତ୍ର ନେଇ ଯାଇଛନ୍ତି ବୋଲି ସଞ୍ଜୟ ମୋତେ କିଛିଦିନ ତଳେ କହିଲେ। ଯା ଭିତରେ ୨୫ ବର୍ଷ ବିତି ଯାଇଥିଲେ ବି – ଦୁଃଖ, କ୍ଷୋଭ ଓ ସଂଶୟ ସହିତ କହିବାକୁ ପଡୁଛି – ସଞ୍ଜୟ ତାକୁ ପ୍ରକାଶିତ କରି ନାହାନ୍ତି। ଯଦି ସଞ୍ଜୟ ସେ ସବୁ ଆମକୁ ଦେବେ, ତେବେ ସେ ସବୁକୁ ଭବିଷ୍ୟତରେ ପ୍ରକାଶ କରିବା ଲାଗି ଉଦ୍ୟମ କରିବୁ।

ବହିର ନାମକରଣରୁ ଜଣେ ସ୍ପଷ୍ଟ ହେଇଯିବା ଉଚିତ୍ ଯେ ଏଥିରେ ସ୍ଥାନିତ ସବୁ କବିତା କେବଳ ଛନ୍ଦଯୁକ୍ତ ନୁହେଁ, ଏସବୁ ହିଁ 'ଅନାମ' ଛନ୍ଦ। ସବୁ କଥା, ନଥା, ଘଟଣା, ଚରିତ୍ର, ପ୍ରକୃତି ଓ ପଞ୍ଚଭୂତର ନିଜସ୍ୱ ଛନ୍ଦ ଅଛି। କବି ଜନ୍ ବର୍ନସାଇଡଙ୍କ

କଥା ମନେପଡୁଛି: 'ମୋ ଚାରିପଟ ପୃଥିବୀର ଛନ୍ଦ ହିଁ ମୋତେ ଲେଖିବାକୁ ଉତ୍ସାହିତ କରିଛି। କେବଳ ଭାଷା ନୁହେଁ, ବରଂ ମାଟି, ପବନ, ଅକାଶ ଓ ଅନ୍ୟ ଜୀବଜନ୍ତୁଙ୍କ ଛନ୍ଦ ବି। ଶବ୍ଦ ଆସିବା ଆଗରୁ ପହଞ୍ଚିଯାଏ ଛନ୍ଦ ଏବଂ ତାହା ହିଁ ମୋତେ ସବୁକିଛିର ନିର୍ଯ୍ୟାସ ପରି ମନେହୁଏ।' (What makes me write is the rhythm of the world around me – the rhythms of the language, of course, but also of the land the wind, the sky, other lives. Before the words comes the rhythm – that seems to me to be of the essense." – John Burnside)

ଏତେ ବର୍ଷ ପରେ ଏ ବହି ଛପାଇଲା ବେଳେ ମୋ ସାମ୍ନାରେ ସେ ସମୟର ଚିତ୍ରସବୁ ଭାସି ଯାଉଛନ୍ତି। ସେ ସମୟ ବି ଥିଲା ଭ୍ରଷ୍ଟାଚାର, ଜାତିଆଣ ବିଦ୍ୱେଷ, ଅନ୍ୟାୟ, ପ୍ରତାରଣା ଓ ଦେଶଦ୍ରୋହର ସ୍ୱର ଯାହା ଏବେ ବି ରହିଛି ଆହୁରି ତୀବ୍ର ଭାବରେ। ବେଳେବେଳେ ଲାଗେ କୁମାର ମହାନ୍ତି ତାଙ୍କ ସମୟର କେବଳ ବାର୍ତ୍ତାବହ ନଥିଲେ ବରଂ ସର୍ବକାଳୀନ ତାଙ୍କର ସ୍ୱର ଓ ପ୍ରତିବାଦ। ଆଧ୍ୟାତ୍ମିକତା ଭିତରେ ବି ସେ ବିପ୍ଳବର ବୀଜ ବପନ କରିଥିଲେ। ତାଙ୍କର ଏଇ ସର୍ବକାଳୀନ ସ୍ୱର ଆଗାମୀ ସମୟର ପାଠକ ଓ ଗବେଷକଙ୍କ ପାଇଁ ପ୍ରାସଂଗିକ ହେଇ ରହିବ ଯେତେଦିନ ପର୍ଯ୍ୟନ୍ତ ସତ କହି ଗୁମର ଫିଟାଇ ଦେଇଥିବା ଲୋକଟିକୁ ହାତକଡ଼ି ପିନ୍ଧାଇ ଦିଆଯାଉଥିବ, ପାଟି ଖୋଲିଦେଲେ କବିକୁ ଦଣ୍ଡ ଦେବାଲାଗି ସମୟ ଟାକି ବସିଥିବ – ସେତେଦିନ ଯାଏ କୁମାର ମହାନ୍ତିଙ୍କ କବିତା ପ୍ରାସଂଗିକ ହୋଇ ଏ ମାଟିରେ ବଞ୍ଚିଥିବ।

ଏଇ କ୍ଷୁଦ୍ର ଉପକ୍ରମଣିକାଟି ଲେଖିଲାବେଳେ ମନକୁ ଭିକ୍ଟର ହ୍ୟୁଗୋଙ୍କ ସୁବିଖ୍ୟାତ ଉପନ୍ୟାସ 'ଲା ମିଜରେବଲ୍' ମନକୁ ଆସୁଛି। ୧୮୬୨ରେ ପ୍ରକାଶିତ ଏଇ ଐତିହାସିକ ଫ୍ରେଞ୍ଚ୍ ଉପନ୍ୟାସଟିର ଶବ୍ଦ ସଂଖ୍ୟାଥିଲା ୬୫୫,୪୭୮। ମାତ୍ର ଏଇ ବିପୁଳ ତଥା ଲୋକପ୍ରିୟ ଉପନ୍ୟାସର ମୁଖବଂଧ ଥିଲା ମାତ୍ର ୧୦୯ ଶବ୍ଦ ସମ୍ବଳିତ। ଏଇ କ୍ଷୁଦ୍ର ମୁଖବଂଧ ଏବେ ବି ସବୁ ଉଚ୍ଚାଙ୍ଗ ସାହିତ୍ୟର ଆୟୁଷର ମାପକାଠି ପରି ମନେହୁଏ: ଯେତେଦିନ ଯାଏ ପରମ୍ପରା ଏବଂ ଆଇନ ବଳରେ, ସଭ୍ୟତା ସାମ୍ନାରେ ଗୋଟେ ସାମାଜିକ କୁତ୍ସା କୃତ୍ରିମ ଉପାୟରେ ପୃଥିବୀକୁ ନର୍କରେ ପରିଣତ କରୁଥିବ ଏବଂ ମଣିଷର ବିପତ୍ତିକୁ ତା'ର ଭାଗ୍ୟ ବୋଲି ସଂଶୟ ସୃଷ୍ଟି କରୁଥିବ; ଯେତେଦିନ ଯାଏ ଦାରିଦ୍ର୍ୟ ଯୋଗୁଁ ମଣିଷ ଅଧଃପତନ, କ୍ଷୁଧା ଯୋଗୁଁ ନାରୀର ବିନାଶ, ଭୌତିକ

ତଥା ଆଧ୍ୟାତ୍ମିକ ନିସଂଗତା ଯୋଗୁଁ ଶୈଶବକୁ ବାମନ ପରି କ୍ଷୁଦ୍ର କରୁଥିବା ଆଦି ତିନୋଟିଯାକ ସମସ୍ୟାର ସମାଧାନ ନ ହେଇଛି; ଯେତେଦିନ ଯାଏ, କେତେକ କ୍ଷେତ୍ରରେ, ପ୍ରକାରାନ୍ତରେ କହିବାକୁ ଗଲେ ଏବଂ ଟିକିଏ ଭିନ୍ନ ଦୃଷ୍ଟିରୁ ଭାବିଲେ, ସାମାଜିକ ଶ୍ୱାସରୁଦ୍ଧ ଅବସ୍ଥା ଏବେ ବି ବଳବତ୍ତର ରହିଛି; ଯେତେଦିନ ଯାଏ, ଏ ପୃଥିବୀ ପୃଷ୍ଠରେ ଅଜ୍ଞତା ଓ ଦୁର୍ଦ୍ଦଶା ରାଜତ୍ୱ କରୁଛି – ଏଭଳି ବହି କଦାପି ତା'ର ପ୍ରାସଂଗିକତା ହରାଇବ ନାହିଁ।' (So long as there shall exist, by reason of law and custom, a social condemnation, which, in the face of civilization, artificially creates hells on earth, and complicates a destiny that is divine, with human fatality; so long as the three problems of the age—the degradation of man by poverty, the ruin of women by starvation, and the dwarfing of childhood by physical and spiritual night—are not solved; so long as, in certain regions, social asphyxia shall be possible; in other words, and from a yet more extended point of view, so long as ignorance and misery remain on earth, books like this cannot be useless.)

ମୋର ପୂର୍ଣ୍ଣ ବିଶ୍ୱାସ, କବିତା ସବୁ ପଢ଼ିଲାବେଳେ ସୁଧୀ ପାଠକେ ଏ କଥାର ଝଲକ ବି ପାଇବେ।

ମନୁ ଦାଶ

# କବିତାର ପ୍ରଥମ ଧାଡ଼ି



ଦୁଃଖ ଦର କେତେ କହ ସାହୁକାର
ସୁଖ ଦର କେତେ କହ
ଜୀବନ ମରଣ ଦର ତ କଷିଲ
ପରମର ଦର କହ
ସାହୁକାର
ସର୍ଜନାର ଦର କହ ।।

କେତେ ଦରେ ତୋର
ଶୂନ୍ୟରୁ ଅଙ୍କୁର
ପିତା ରେତ ଦର କହ
କେତେ ଦରେ କିଣା
ମାତା ଗର୍ଭଶୂଳ
କୁଆଁରାବ ଦର କହ
ସାହୁକାର
ସ୍ୱର୍ଗଦ୍ୱାର ଦର କହ ।।

ପୃଥ୍ୱୀ ଦର କେତେ
କହ ସାହୁକାର
ଜାତି ଦର କେତେ କହ
ଓଡ଼ିଆ ଜାତିର
ଦର ତ କଷିଲ
କୈବଲ୍ୟର ଦର କହ
ସାହୁକାର
ବିଶ୍ୱାସର ଦର କହ ।।

ଭରସାର ଦର
ଅଭାବେ ସଂସାରେ
ଅନୁଭୂତି ଦର କହ
କବିଙ୍କ ଅକ୍ଷର
ଦର କଷିଦେଲ
ଅଣାକ୍ଷର ଦର କହ
ସାହୁକାର
ଅଣଚାଶ ଦର କହ ।।

ଅଣଚାଶ ଦର କହ ସାହୁକାର
ମହାକାଳ ଦର କହ
ଦୁଃଖ ଦର କେତେ କହ ସାହୁକାର
ସୁଖ ଦର କେତେ କହ ।।



ଝଡ଼ିଆ ପବନ    ମୁଣ୍ଡିଆ ତଳ
ମେଘ ଟିପି ଟିପି    ଚୁମୁଛି ଡାଳ
ଅଗିଲା ଡାଳରେ    କୁଆଁରୀ ଫୁଲ
ଫୁଲରୁ ଝରୁଛି    ମହୁର ଧାର
ଭଅଁରର ଗୀତ କାଇଁ
ବାବୁଧନ
ପାଣି ମାରିଗଲା ଝାଇଁ ।।

କାଳିଆ ଭଅଁର    କାଳିଆ କାଉ
କାଉ ଖୋଜିଲାନି    ଫୁଲରୁ ମହୁ
ମହୁ ଖୋଜିଲାନି    ମହୁମାଛି କି
ଯାହା ସଞ୍ଚିବୁ ତା    ମାଟି ଘଟି କି
ମାଟିରେ ଜୀବନ କାଇଁ
ବାବୁଧନ
ପାଣି ମାରିଗଲା ଜାଇଁ ।।

ଜୀବନ ପାଇଁକି    ମରଣ ପାଇଁ
ଚାତୁରୀ ଯେତେକ    ଗାଦିର ଠାଇଁ
ଗାଦି କି ସମ୍ପତ୍ତି    ମାପ ବିହୀନ
କେତେ ଜମି ଜମା    କେତେ ବିହନ
ଗାଦିର ଖଜଣା କାଇଁ
ବାବୁଧନ
ପାଣି ମାରିଗଲା ଝାଇଁ ।।

ଗାଦି ଚଉକି କି ମଣିଷ ମୂଲ
ପୋଲା ପୋଲାଙ୍ଗରେ କାହୁଁ ବା ତେଲ
ଗାଆଁ ହେଲେ ଦୂର ଲୋକ କି ଦୂର
ସଂଜ ବୁଡ଼ିଗଲେ ଫେରିବ ଘର

ଭଲ ଲୋକଟିଏ କାଇଁ
ବାବୁଧନ
ପାଣି ମାରିଗଲା ଝାଇଁ ।।



ବେଳ ରତ ରତ
ଖସିଯାଏ ଖୋସା
ଉଚ୍ଛନ୍ନ ରତିରେ

କଅଁଳି ଜହ୍ନ
ଫୁଲ ଉଚ୍ଛନ
ନାହିଁ ନା ଚିହ୍ନ
ମୂଷା ରଙ୍ଗିଗଲା ଭୂଇଁ
ଅନାମରେ
ଭାଙ୍ଗିବାର ବେଳା ଏଇ ।।

ଭାଙ୍ଗଇ କିଏ ସେ
ଗଢ଼ିବା ଭାଙ୍ଗିବା
ଛଇ କଢ଼ା ଲୋକ

କିଏ ଯୋଡ଼ଇ
କାଳର ଛଇ
ଖୋଜୁଛି ଛାଇ
ଛାଇ ପଛେ ପଛେ ଧାଇଁ
ଅନାମରେ
ଭାଙ୍ଗିବାର ବେଳା ଏଇ ।।

ଧାଇଁବା ଘୋଡ଼ାକୁ
ମଣିଷ ଝୁଣିଲା
ଲୋଭ ଚାଟିଗଲା

କାହିଁ ସଇସ
ନିଜ ମାଉଁସ
ଜୁଇ ପାଉଁଶ
ପାଉଁଶ ଧରମ ନୋହି
ଅନାମରେ
ଭାଙ୍ଗିବାର ବେଳା ଏଇ ।।

ଧରମ ଭରମ		ନବୁଝେ କେହି
ଶୂନ୍ୟ ବୁଝାମଣା		ଶୂନ୍ୟରେ ଥାଇ
କାହୁଁ ଫେଡ଼ିଲେ		ତା' ଶୂନ୍ୟ ହୁଅଇ
ଶୂନ୍ୟକୁ ନ ଚିହ୍ନୁ ଶୋଇ
ଅନାମରେ
ଭାଙ୍ଗିବାର ବେଳା ଏଇ ॥



ଦୁଃଖିର ସଂଗାତ ତୁହି
ଦୁଃଖି ମୋ ଜୀବନ
ମନ ବନସ୍ତରେ ନିଆଁ
ଜାଳଇ ଶ୍ରାବଣ ।।
ମୋ ଦାଣ୍ଡେ ଶ୍ରାବଣ ହେଲେ
ତୋ ଆଖିରେ ମେଘ
ମୋ ବାଡ଼ିରେ ଫୁଲ ଥିଲେ
ତୋ ଗଭାରେ ଲୋଭ
ମୁଁ ଯାହା ଥିଲି ଅଛି ସେଇତ ମୋ ପ୍ରେମ
କଷଣ ବଢ଼ାଇ ଖାଲି ଖୋଜୁ କି ପ୍ରମାଣ ।।

କଉଡ଼ି ଗଣି ସରବେ
ପୁହାଇଲେ ରାତି
ଚୋର ଘେନି ଖସିଗଲା
ତୋ କଜଳପାତି
ସାଉଁଟି ସାଇତିବାକୁ କେତେ ବା ଜୀବନ
ମଣିଷ ପାଗଳ ସିନା ଜୀବନ ଜୀବନ ।।

ସବୁ ଏଠି ପାଣିଫଟା
ପାହାନ୍ତା ଆକାଶ
ସବୁ ଉଡ଼ା ଧଳା ମେଘ
ସରନ୍ତା ବତାସ
କାହାଟାଳେ ଆମ୍ବଡାଳ କା ଦୁଆରେ ନିମ
ବାହା ବେଦୀ ଭାଳଇ କି ମଶାଣିର ନାମ ।।
ମଶାଣିର ପରେ କହ
କି ରଙ୍ଗ ତୋହର
ସର୍ଜନାର କିବା ରଙ୍ଗ
କି ରଙ୍ଗ ସ୍ରଷ୍ଟାର
କେତେ ରଙ୍ଗ କରୁ ଏଠି ରଙ୍ଗ କେତେ ଭିନ୍ନ
କଳା ଧଳା ନାଲି ତିନି ନ ବୁଝିଲା ମନ ।।
ଉବୁଟୁବୁ କେତେ କାଳ
ଆରେ ବାଳଖିଲ୍ୟ
ଓଲଟ ଗଛର ଡାଳେ
ଆକାଶରେ ଚେର
ଆକାଶ ଚିରିଲି ହାତେ ଅନ୍ଧାରୀ ଭଜନ
ଟୋପା ଟୋପା ଅନ୍ଧାରକୁ ଏକା କରେ ପାନ ।।



କହନା କଥା, କହନା କଥା
କହିଲେ ଫିଟିବ ଅଡୁଆ ସୂତା
ଫିଟିଲେ ଗୁମର ସବୁତ ପିତା
ଲାଗିବ ପାଲା
ବାନ୍ଧି ନେଇଯିବେ ପୁଲିସି ବାଲାରେ
ପୁଲିସି ବାଲା ।।

କଥା କହିବିନି କିପରି
ଜନମ କାଳର କୂଆଁରାବ ଠାରୁ
କଥା ଯାଏ ନଇ ପହଁରି ।
ମାଲିକ ଦଲାଲ ମେଳି ହୋଇଲେ
ପିଲା ମୁହୁଁ କ୍ଷୀର ଲୁଟ କଲେ
କୁଲି ଠିକାଦାର ଏବେ ଦେଖୁଛି
ପଖାଳ ହାଣ୍ଡି ବି ଛଡ଼େଇ ନେଲେ
କିପରି ରହିବି ଚୁପଚୁ ଭଲା
ନେଲେ ନଉ ବାନ୍ଧି ପୁଲିସି ବାଲାରେ
ପୁଲିସି ବାଲା ।।

ଚୁଟି ଧରିବି ନା ଚଟି ଚାଟିବି
ଏଇ ଗୋଟିଏ କଥା ପଚାରିଛୁ
ଆଉ କିଛି କଥା ନାହିଁ ।

ବାକୀ ସବୁକଥା ବତୀ ପେଲିଆ
ମାଛ ଦେଖାନାହିଁ ପାଣି ଗୋଳିଆ
ଭଉଁରୀ ଭିତରେ ନାଆ ଘୂରୁ ଅଛି
କାତମାରି ହେଲା ହାତ ହାଲିଆ
ହାଲିଆ ହାତରେ ମାରିଲେ ଠେଲା
ବାନ୍ଧି ନେଇଯିବେ ପୁଲିସି ବାଲାରେ
ପୁଲିସି ବାଲା ॥

ହାଲିଆ ହାତ ନାଁ ହାଲିଆ ମଥା
ମିତ ବସି ନାହୁଁ ବୋଲି ସିନା ଆମେ
ଚରଣ ଚୁଟିଆ ମାରନ୍ତି ଜୋତା ।
ଦିହୁଡ଼ି ଜଳୁଛି ଆଖି କୋଣରେ
କରତ ଚାଲିଛି ଛାତି ଭିତରେ
ଏଥର ଚାଲିବା ଏକା ବାଟରେ
ତାଙ୍କ କଥା ଗଡୁ ହାଟ ବାଟରେ
ଘାଟରେ ପଡ଼ିଲେ ସବୁତ ଖୋଲା
ବାନ୍ଧିବ କିପରି ପୁଲିସ ବାଲାରେ
ପୁଲିସି ବାଲା ॥

ବତୀ ଲିଭେଇଲେ ପୁଅ
ପୋଷି ପାରିବାର ବଳ ନାହିଁ ବୋଲି
ଏନ୍ତୁଡ଼ିକୁ ମାରୁ ଝିଅ !
ପୀରତି ଦଉଡ଼ି ଯାଉଛି ଛିଡ଼ି
ଭାଙ୍ଗୁ ନାହିଁ କା'ର ହାତରୁ ଚୁଡ଼ି
କା ଘରେ ଶୁଭୁଛି ହେଷ୍ଟାଳ ରଡ଼ି
ସାଧବ ପୁଅକୁ ଖାଏ କଉଡ଼ି
କଉଡ଼ି ମୂଲକୁ ନାହିଁ ତ ତାଲା
ଖୋଲି ନେଇଯିବେ ପୁଲିସି ବାଲାରେ
ପୁଲିସି ବାଲା ॥

ମୁଁ ତ ବଳି ବେଳା ଗଳା ମାଳ
କିଏରେ କାଙ୍ଗାଳ ପେଟ ବିକଳରେ
ବଜାରେ କରୁ ମୋ ମୂଲ ?

ଯା ମନ ଭୂତ ତାକୁ ଖାଇଲା
ମୋ ନାମେ କଳଙ୍କ ମିଛେ ରଟିଲା
ହାରିଲା କୁମର ତା ଜୀବନେ ସିନା
ମିତ ବସିବା ତ ଆରମ୍ଭ ହେଲା

ମିତ ବସିଲେ ତ କଥା ସରିଲା
ବାନ୍ଧି ପାରିବେନି ପୁଲିସି ବାଲାରେ
ପୁଲିସି ବାଲା ।।



ଜମିର ମୂଲ
କୋଠାର ମୂଲ
ସୂନାର ମୂଲ ଅଛି
ଏଠି
ମଣିଷର ମୂଲ ନାହିଁ କିଛି ॥

ଚଉକି ମୂଲ
ଭେଳିକି ମୂଲ
ଚାମ୍‌ଚା ମୂଲ ଅଛି
ଏଠି
ଜୀବନର ମୂଲ ନାହିଁ କିଛି ॥

ମତା ପିତା ହେଲେ ମାଟି ଆକାଶ
ରଜ ବୀର୍ଯ୍ୟ ହେଲା ତହୁଁ ପ୍ରକାଶ
ଋତୁରେ ପଡ଼ିଲେ
ତୋ ମୋ ଜନମ
ଉଜାଣିରେ ସାରାପାଣି ଖଲାସ ॥

ଗୋଲାମୀ କରିବୁ କାହା ପାଇଁକି
ବାପ ବୁଝି ନାହିଁ ନିଜ ମାଟିକି
ମାଟି ମା ସଢୁଛି ଅବହେଳାରେ

ଭାଇ ତ ନାହାନ୍ତି ଭଗାରୀ ପଲେ
ସ୍ତିରୀଏ ଭଜନ୍ତି
ବାବା ନାମ ତାଙ୍କ
ପୁଅ ଝିଅ ନାମ କାନ୍ଥ ବାଡ଼ରେ ।।

ଭାଷଇ ଗୋଲାମ ଦାସ ତେଢ଼ିଣ
ଚରକିର ସିନା ଯା' ସନମାନ
ଚଉକି ନଥିଲେ ଚାମ୍‌ଚା ହେବି
ବିନା ପାଣିରେ ବାଳିଆ ପିଟିବି
ନୋହିଲେ ବାବାଙ୍କ
ବିଭୂତି ଅଛି
ଗୁଣୀ କିଛି ନୁହେଁ ମୁଣିରେ ଅଛି
ଗୋଲାମ ପରଖି ମୂଲ କରିଛି
ଏଠି
ମଣିଷର ମୂଲ ନାହିଁ କିଛି ।।

ବନ୍ଧକ ଦେଲି କୋଠାବାଡ଼ି
ଘଣ୍ଟି ଘାଘୁଡ଼ି ସୂନା ଚୁଡ଼ି
ବନ୍ଧକ ଦେଲି ଜମିବାଡ଼ି
ଗାଈ ବଳଦ କାଳି ବିରାଡ଼ି
ସାଧବ ସବୁ ରଖିଲା
ଶେଷେ କହିଲି ହାତ ଯୋଡ଼ି
ପାଦତଳେ ତା' ଗଡ଼ିଗଡ଼ି
ସାଧବ ହେ ! ସବୁ ସଇଲା ।।

ଏଥର ରଖେ ବନ୍ଧକି ମତେ
ଅଣ୍ଟା ପିଠିରୁ ବଳ ଭାଜିଲା
ତୋ ମୋ ଜୀବନ କେତେ ମାତର
ଆଜି ଅଛି ତ କାଲି ବାହାର

କାହା ପାଇଁ କରୁ ସମ୍ପତ୍ତି ଠୁଳ
କି ନେଇ ଯିବୁରେ ସରଗ ଦ୍ୱାର ?

ସାଧବ ହସିଲା ନିଶ ଆଉଁସି
ପଇସାର ନାହିଁ କେହି ମାଉସୀ
ସାଧବ ପରଖି ମୂଲ କରିଛି
ଏଠି
ଜୀବନର ମୂଲ ନାହିଁ କିଛି ।

ହଅନ୍ତା ହଅନ୍ତା ସଂସାର ପାଗଳ
ଜୀଅନ୍ତା ଜୀଅନ୍ତା ବଳିର ଛାଗଳ
କୁଆଡ଼େ ଯାଉଛେ ଜାଣୁନେ କେହି
ଜୀବନ କି ଖାଲି ଉଦର ପାଇଁ ?
ମଣିଷ କି ଖାଲି ଗୋଲାମ ହେବ
ସାଧବ କି ଖାଲି ବନ୍ଧକି ନେବ ?
ଭଲ ପାଇବା କି ନିଜେ ନିଜକୁ
ବାକୀ ଲୋକ ଯେତେ ଚୁଲି ମୁହଁକୁ ।

କହ କାଳିଆ ତୁ ବୁଝି ବିଚାରୀ
କି ବଣି ପୋଷା ଯେ
ଝିଣ୍ଟିକା ମାରି ।।
ଭଣଇ କାଳିଆ କାଳର ଗୀର
କଳିରେ ମାଲିକ ଅଛି ଯା ବଳ
ନିଜ ବଳେ ଯଦି ଭରସା ଏତେ
ବଳୁଆ କଳୁଆ ଡରେ କେମନ୍ତେ ?
ସଂସାରେ ଧରମ ଯେ ରଖି ପାରେ
ସେ କାହା ଶରଣ ଖୋଜି କି ବୁଲେ ?

ଏଥିରୁ କୁମ୍ଭର ସବୁ ବୁଝିଛି
ଆଜି ଯେ ଗାଦିରେ
କାଲି ଖସିଛି
ସଂସାର ପରଖି ମୂଲ କରିଛି
ଏଠି
ମାଲିକର ମୂଲ ନାହିଁ କିଛି ।



ମଣିଷର ମୂଳ ଅଛି ଅନାମରେ !
ଜୀବନର ମୂଳ ଥାଇ
ସପନର ମୂଳ କାହିଁ ଅଛି କହ
ଦେ ତୁ ବାଟ ବତେଇ ।।

ବାଟରେ ଥୋଇଲି ପାଦ ଅନାମିକା
କଣ୍ଟା ଶୋଷଇ ରକତ
ସପନର ନାମେ ନିଜ ଛବି ବିକା
କିଏ କି ଦେଖାଏ ବାଟ ?

ପାଣିକି ମାଇଲି ନାତ ଅନାମରେ
ଛିଟିକି ମୁହଁରେ ପାଣି
କୋଉ ଛବି କେତେ ବେଉସା ହୁଏରେ
ମଠ କି ପଇସା ବୁଣି ?

ଶୁଆ ଗାଇଗଲା ଗୀତ ଅନାମିକା
ଶାରୀ ନ ବୁଝିଲା କିଛି
ଭଗତି ମଉଛା ମଠ ଉଛୁଳେ ଲୋ
ଚେଲା ଦେ ଗୋଟେ ଖୋଜି ।

ପାଲିଙ୍କିରେ ବର ବିଜେ ଅନାମରେ
ରୋଷଣିଆ ଆଗେ ଆଗେ
ଚେଲା ରୋଷଣିଆ ଏକା କଥା କିରେ
କାହାର କିଏ କି ଲାଗେ ?

କାଳିସୀ ଲାଗିଛି ହୁରି ଅନାମିକା
ଗାଆଁ ଦାଣ୍ଡ ହେଲା ଖାଲି
ଘଡ଼ିଏ ବିତିଲେ ଠାକୁରାଣୀ ବିଦା
କାଳିସୀ ତ ଗାଆଁ ମାଳି ।।

ତା' ବେକେ ରୁଦ୍ରାକ୍ଷ ମାଳି ଅନାମରେ
କିଏ ହେଲା ଜଟାଧାରୀ
ସଂହତି ଆସିବ କେଉଁଠୁ କହରେ
ମଣିଷର ପୂଜା କରି ?

ମଣିଷର ପୂଜା ଛାଡ଼ ଅନାମିକା
କାଳ-କାଳିଆ ଅମର
କ୍ଷୀର ସାଗର ତୋ ଦୁଆର ଚୁମୁଛି
ଖୋଜୁଛି ଝରଣା ଛାର ।।

ଏକା ପାଣି ପିଆ ବନ୍ଧୁ ଅନାମରେ
ଭିନ୍ନ ପାଣି ହେଲେ ଗୋଳ
ଚାତକ ଚାହିଁବ ବରଷା ଧାରକୁ
କୁକୁର ବାଛେ କି ଜଳ ?

ସବୁ ତ ବୁଝୁଛୁ ଆଲୋ ଅନାମିକା
ଅବୁଝା ଋତୁ ବିତୁଛି
ସପନର ମୂଳ ସଂହତିରେ ଥାଏ
କୁମର ଏକା ନୋହିଛି ।।



ଦୁନିଆଁ ଦୁନିଆଁ କହିବାକୁ
ଦୁଇ ନିଆଁ ମଝି ଝରଣାକୁ
ଝରଣା ସୁଅରେ ଜଳିଯାଏ ମନ
ନିଆଁ ଖୋଜେ ବସି ପାଉଁଶକୁ ।।

ମନର ମୂଲ କି କିଛି ନୁହେଁ
ଟିକିଏ ଦରଦ ତୁଲ ନୁହେଁ
ହାତ ପାଆନ୍ତାକୁ ମଣୁ ମାଟି ତୁଲ
ନ ମିଳିବା ମୂଲ ସୁବର୍ଣ୍ଣକୁ
ଦୁନିଆଁ ଦୁନିଆଁ କହିବାକୁ ।।

ଭିଜା ଋତୁ ଶୁଏ ମନ ମାରି
ନୀରବ ସଭାରେ ଶ୍ୱାସ ପରି
ସବୁ କାହାଣୀରେ ଲୁହ ଢ଼ୋକ ଢ଼ୋକ
ଝୁରିବା କେବଳ କପାଳକୁ
ଦୁନିଆଁ ଦୁନିଆଁ କହିବାକୁ ।।

ଦୂତ ହେଲେ ମେଘମାଳା ଯେତେ
ଆପଣା ଭୋକରେ ହାତ ପାତେ
ବରଷିବା ଲାଗି ବାଛିବେ କିପରି
କେଉଁ ଛାତ କେଉଁ ଅଗଣାକୁ
ଦୁନିଆଁ ଦୁନିଆଁ କହିବାକୁ ।।

ପ୍ରତି ପଦ ପାତେ ଝୁଣ୍ଟିଛି ମୁଁ
ଝୁଣ୍ଟି ଉଠିବା କି ଶିଖିଛି ମୁଁ

ମୋ ନାମେ ବାଜିଲେ ଦୁର୍ନାମ ଡେଙ୍ଗୁରା
ଭୁଲିବେ କି କେହି ତୋ ନାମକୁ
ଦୁନିଆଁ ଦୁନିଆଁ କହିବାକୁ ।।



କି କଥା କହିବି କହ
ମୋର କଥା ଅଛି ଅସୁମାରି
ନ କହିଲେ କଥା ରଖେଇ ଦବନି
କହିଲେ ଗଲି ମୁଁ ସରି ।।

ନିରିଦୋଷୀ ମୁହିଁ ନିରିବଲୁଆ
ମିଛକୁ ମାଇଲେ କାଠ ଫାଳିଆ
ମଥା ଫାଟି ବୁହେ ରକତ ଧାର
କହିଲେ ମାଟିକୁ କଲୁ ଅଳିଆ
ଏ କେଉଁ ଦେଶର କେଉଁ ନିଶାପ
କହିବ ବୁଝି ବିଚାରୀ
ମୋର କଥା ଅଛି ଅସୁମାରି ।।

କଟୁଆଳ ସବୁ ଭୁଆ ବାବାଜୀ
ଗାଦି ଥିଲା ଯାଏ କେବଳ ହାଁ ଜୀ
ସଲାମ ତତେ ନା ସଲାମ ମତେ
ଖାତରେ ପଡ଼ିଲେ ହେ ଜଗନ୍ନାଥେ
କାଳିଆ ମତେ ତା କଟୁଆଳ କରି
ବିବେକ ଦେଲା ଉଝାଳି
ମୋର କଥା ଅଛି ଅସୁମାରି ।।

ରାଜା ପରଜା ମୁଁ କିଛି ମାନେନି
ଜାତି ଅଜାତିର କଥା ବୁଝେନି
ସିଂହଦୁଆରର ଦୁଃଖି ପତିତ
ଗରୁଡ଼ ଖୁମ୍ବ ମୋ ମନର କାତ
ବାଇଶି ପାହାଚ ଚଢ଼ିବାକୁ ଅଛି
ପାଦରେ ଝୁଲେ ଶିକୁଳି
ମୋର କଥା ଅଛି ଅସୁମାରି ।।

ଓଡ଼ିଆଏ ଆଜି ଦେଢ଼ ଗୋଡ଼ିଆ
ମୁଣ୍ଡ ବିକିବାକୁ କେତେ କଜିଆ
ହାତ ନ ଉଠୁଣୁ କାନି ପତାଅନ୍ତି
ଲୋକେ କହନ୍ତି କରମ କୋଢ଼ିଆ
ବିବେକକୁ ବିକି କି ଜିଆଁ ଜୀଇଁବା
ବେଳ ତ ଯାଉଛି ସରି
ମୋର କଥା ଅଛି ଅସୁମାରି ।।

ନୀଡ଼ର ଚଢ଼େଇ ନୀଡ଼ ଖୋଜୁଛୁ
ନଈରେ ଆବାସ ଶୋଷିଲା ଅଛୁ
ଭିଟାମାଟି ଦେଖି ଦୁନିଆଁ ଚକିତ
ଦାରୀ ଘରେ ଆମେ ଠାବ ଖୋଜୁଛୁ
ଅନ୍ଧକୁ ଅନ୍ଧ ହିଁ ବାଟ କଢ଼ାଅନ୍ତି
କହିଲେ ହେଲୁ ଅଇରୀ
ମୋର କଥା ଅଛି ଅସୁମାରି ।।

କିଏ ସେ କାହାକୁ ମାରେ କୋଉଠି
କିଏ ବା କାହାର ଦୀପ ବଇଠି
ନ ମାଗୁଣୁ ଯେବେ ଶରଣ ମିଳେ
ଜୀବନ ପାଇଁ କି ଲୋଭ କାହିଁକି
ଯେଉଁ ପଞ୍ଜୁରୀରୁ ଉଡ଼ିଲୁ କୁମର
ଫେରନ୍ତେ ସେଇ ପଞ୍ଜୁରୀ
ମୋର କଥା ଅଛି ଅସୁମାରି ।।



ଆମେ ସବୁ
ଏକା ଏକା ଲୋକ
ଏକା ଆସୁ ଏକା ଫେରୁ
ଏକା ଏକା
ହଜିଯିବା ଲୋକ ।
ଦେହ ଦେଉଳେ ଗୁଞ୍ଜଇ
ମହାକାଳ ସ୍ୱର
ଶବଦରେ ଜମିଦାରୀ
କାହା ଅଧିକାର
କିଏ ବୁଣେ କିଏ କାଟେ
ଖାଏ କୋଉ ଲୋକ
ଆମେ ତୁଚ୍ଛା ଭେଳିକି ମାଲିକ !

ତୋଓର ମୋଓର ମୋହ
ଅନ୍ଧ ଜଗତର
ଅନ୍ଧାରୀ ଗଳିରୁ ଖୋଜୁ
ଆଲୁଅର ଘର
ଘର ଚିହ୍ନେଇବା ପାଇଁ
କାହାନ୍ତି ସେ ଲୋକ
ଆମେ ଖୋଜୁ ରାଜପଥ ଯାକ

ରାଜପଥ ଗହଳିରେ
　　　　　　ଲୋକର ବୋବାଳି
ଲୋକଙ୍କ ବାହାନା ଦେଇ
　　　　　　ଖୋଜେ ନିଜ ପାଳି
ଭଣ୍ଡିବାକୁ ଜାତି ଦେଶ
ଧରମର ଭେକ
　　　　　　କହ ଆମେ କୋଉ ଦେଶ ଲୋକ !
　　　　　　ଏକା ଆସୁ ଏକା ଫେରୁ
　　　　　　ଏକା ଏକା ହଜିଯିବା ଲୋକ ।



ଭଲା ଦେଶେ ଆମେ ବାନ୍ଧିଲୁ ଚାଳ
ଜବାବ ମିଳେନି ଖାଲି ସୁଆଲ
କହ କାଳିଆ ଯେ କି କାରବାର
ସୁଆଲ ଉପରେ ଖାଲି ସୁଆଲ ।।

ମନ ମନ୍ଦିର ମନ ବଇଁଶୀ
ମନରୁ ଶବ୍‌ଦ ପଡୁଛି ଖସି
ଶବ୍‌ଦ ବାନ୍ଧିବ କେ ଜନମିଛି
କଡ଼ି ବେଡ଼ି ସିନା ଶୂନ୍ୟେ ଉଡୁଛି
କହିଲୁ ମରୁଛ ମୁହଁ ତ ଖୋଲ
ଲୋକେ କିଳିଦେଲେ ଦାଣ୍ଡ ଦୁଆର ।।

ତୁଣ୍ଡ ନ ଖୋଲିଲେ ପ୍ରାଣ ବାହାର
ମନ ବୁଝିବାକୁ ପେଟ ଚାକର
ଲୋକଙ୍କ ମୁହଁରେ ଫୁସୁରୁ ଫାସର
ଜୀବନର ଆନ ନାମ ହିଁ ଡର
ନିରିବୁଦ୍ଧିଆଙ୍କ ମାଲିକ ଭଲ କି
ବୁଦ୍ଧିଆ ଲୋକର ଗୋଲାମ ଭଲ ।।

ଚାଲିଛି ଭେଦାରେ ଆସୁଛି ଚାନ୍ଦା
ଚାନ୍ଦା ମାଗୁଛନ୍ତି ପାଞ୍ଚ ପିଆଦା
ମାଟିର ପିଆଦା ମାଟିର ଭେଦା
ଭେଦା ନ ଜାଣିଲେ ଜୀବନ ଅଧା
ଜୀବନ ପାଇଁ କି ଯାହା ବା ଡର
କେତେ ଦୂରେ କହ ସରଗଦ୍ୱାର ॥

ବେଳ କାଟିବ କେ ହାତ ଧୋଇଣ
ଆଧାର ଆସିଛି ଭୋକି ପାଶେଣ
ମୁଁ ଭୋକିଲା ସିନା ସରଗ ଦ୍ୱାରେ
ତୋ ଦୁର୍ନାମ ରଟେ ସାରା ମାଟିରେ
କୁମର ମାଗୁଛି ମୂଲ ମଣିଷର
ନୋହିଲେ ତୋ ମୋ କିବା କନ୍ଦଳ ॥



ସଲାମ୍ କର ରାଇଜ ବାସୀ
ତାଙ୍କ ସ୍ମରଣେ ଆଜି
ହାରିଲେ ଯିଏ ନିଜ ଜୀବନ
ଆମ ଭବିଷ୍ୟ ହେଜି

ସଲାମ୍ କର ରାଇଜ ବାସୀ
ସଲାମ୍ କର ଆଜି ।।

ନଥିଲା ତାଙ୍କ ଲୋଭ ବହପ
ନଥିଲା ହିଂସା ମିଛ ଗରବ
ଚଉକି ପାଇଁ ନଥିଲା ଭୋକ
ନଥିଲା ପର ଆପଣା ଭାବ

ଥିଲା କେବଳ ଏକ ସପନ
ମଣିଷର ମୂଲ ଖୋଜି ।।

ମଣିଷର ମୂଲ ଖୋଜୁ ଖୋଜୁ
ସିଏ ହଜିଗଲେ କେଉଁ ଠାବେ
ରକତେ ଲେଖା ସପନ ତାଙ୍କ
ତିରଙ୍ଗା ଉଡ଼ିଲା ଗଉରବେ

ଗଉରବର କାହିଁ ଦାୟାଦ
କାହିଁ ରଖୁଆଳ କାଜୀ ?

କୁଳ ମଣ୍ଡିବେ ଯେ ଆସିଲେନି
ଆମେ ଖୋଜୁ କାହିଁ ମଥାମଣି
ଗୋଟି ଗୋଟି ସବୁ ହଜିଗଲେ
ଆମେ ପାଦ ରଖୁ ଗଣି ଗଣି
    ଘର ତଳେ ଏବେ ଚୋରା ବାଲି
    ପାରିବ କେ ଏ ଗାତ ବୁଜି ॥

କେତେ କେତେ ଖାତ ଏ ଜାତିର
ଭରିଛି କାଳର ପାରାବାର
ହାରିନାହିଁ ମାଟି ଭାରତର
ଇତିହାସ ଯୁଗ ଯୁଗାନ୍ତର
    ଆମେ ସପନ ବିକାଳୀ ଦଳ
    ସପନ କି ଯାଏ ହଜି ?



ସୁଜନଙ୍କ ଦୁନିଆଁରେ
　　　　କେତେ ଋତୁ ଯାଏ ଫେରି
କେତେ ଗାଆଁ ସପନର
ଉଜୁଡ଼ି ନଯାଏ ଏଠି
　　　　କେତେ କଢ଼ି ଯାଏ ଜଳି ।

ଏଇ ଭଲ ସବୁ ମପାଚୁପା କଥା
ଲଇକ୍ଷଣ କଟା ତିନିଗାର
ଏଇ ଭଲ ଖାଲି ଝୁଣ୍ଟିଆଳ ପଣ
ପେଟେ ଭୋକ ମନା ମାଗିବାର
ଏଇ ଭଲ ଲୁହ
ନ ଦିଶିବା
କୋହର ଜୁଆର ଭଟ୍ଟା ପରି ।।

ଭାବ ବିନା ସବୁ ଅଭାବ ହୁଅଇ
କହିବାକୁ ଲୋକେ ଏକା ଏକା
ଅମାନିଆ ମନ ଗରାଖ ମିଳୁନି
ବୋଲକରାଙ୍କର କିଣାବିକା
ଏ ମନ ବେଉସା
ବେପାରୀଙ୍କ
ହିଆ ଫାଟି ପଛେ ଯାଉ ମରି ।।

ସୁଜନେ ଡାକିଲେ ଚାଲିବାକୁ ସଙ୍ଗେ
ନ ଗମିଲେ ହେଲୁ ଅଘରୁଆ
ପୀରତି ଡାକିଲା ବାହା ଛନ୍ଦିବାକୁ
ନ ମାନିଲେ ହେଲୁ ଦଗାଦିଆ
ଧାରୁଆ ଖଡ଼ଗ
ଧାରଟାରେ
କିଏ ଭକତିଆ କେ ଭିକାରୀ ।।

ବିଶ୍ୱାସ ଅଟଇ ନାମ କି ଫୁଲର
ଯେ ଫୁଲକୁ ଘୁଣ କାଟିକାଟି
ଛାଡ଼ିଯାଇଛି ଯା' ମନ ମନ୍ଦିରରେ
ଜୀବନ ତା ପାଇଁ ଭାତ ରୁଟି
କି ପାରିବୁ କହ
ସେ ଫୁଲରୁ
କୁମ୍ଭର ଖୋଜଇ ଘୂରି ଘୂରି ।



ବହୁଛି ଉଜାଣିରେ ବହୁଛି ଉଜାଣି
ସର୍ବେ ଆମେ ସର୍ବଜାଣ
ନିଜକୁ ନ ଜାଣିରେ
ବହୁଛି ଉଜାଣି ।।

ଉଜାଣି ବୁହାଏ କିଏ
ହାଏ ହାଏ ହୁଏ କିଏ
ହାତ ଯୋଡ଼ି ଡାକେ କିଏ
କାଳ ନିଜ ରସ ପିଏ
ବାକୀ ଯେତେ ଅରମାନ
ଶୂନ୍ୟକୁ ନିଶୁଣିରେ
ବହୁଛି ଉଜାଣି ।।

ଭାସିଗଲା ରବ ରାବ
ହଜିଗଲା ଭବ ଠାବ
ଧସିଗଲା ଶୂନ୍ୟ ଘର
ଖସିଗଲା ପୁଣ୍ୟ ଡୋର
ବାକୀ ଯାହା ବାକୀ ହେଲା
ନଗଦ ନ ଜାଣିରେ
ବହୁଛି ଉଜାଣି ।।

ଦେଖାଣିଆ ଭକତିଆ
ମାଳା ଭଜେ ଠିଆ ଠିଆ
ଠକା ଠକି ଦିଆନିଆ
ମନ ମୀନ ଅଚାବୁଆ
ବାକୀ ଆଉ କାହିଁ କାୟା
ସବୁ ମାୟା ଠାଣିରେ
ବହୁଛି ଉଜାଣି ॥

ନାବ ପିଇଗଲା ନଦୀ
ଭାତ ଗିଳିଗଲା ବୁଦ୍ଧି
ହିଆ ଚରିଗଲା ହସ
ପ୍ରିୟା ପିଇଗଲା ବିଷ
ବାକୀ ଆଉ କି ରହିଲା
ସାଇତିବି ଗଣିରେ
ବହୁଛି ଉଜାଣି ॥

ଉଡ଼ିଯିବ ହଂସା ଘର
ଭାଜିବ କଂସା ଦୁଆର
ପାଞ୍ଚପଦ କୁମରର
ସୁଜ୍ଞାନୀ ଏ ଅର୍ଥ କର
ବାକୀ ଥିବ ବଟୁଆରେ
ପିତଳ ଦୋ'ଅଣିରେ
ବହୁଛି ଉଜାଣି ॥



କୋଟି ଜୀବନର କୋଟି ସପନର
ଲୁହର ଜୁଆରେ ଭେଳା
କାଲିର ବୁକୁରେ ଆଜିକୁ ଜଳେଇ
ଆଗାମୀ ଜନମି ଥିଲା
ତିନି ରଙ୍ଗ ତାର ଆଶାର ଅଙ୍କୁର
ଆକାଶ ଜୁହାର କଲା
ଅନାମରେ !
ଶ୍ରାବଣେ କି ଗଜା ମଲା ?

ଧାରା ଶ୍ରାବଣର ବେଳା ଦି ପହର
କାଉ କଲା କାଆ କାଆ
ଆସିବ କିଏ ସେ ଅଜଣା ବାଟୋଇ
ବିକଳ ନଈରେ ନାଆ
ନଈରେ ଭଉଁରୀ ଭଉଁରୀରେ ଜାତ
ଦୋହଇ ପିଟିଲା ବାଆ
ଅନାମରେ !
ନିଶ୍ୱସେ ଆଶାର ରାହା ।।

ଆଶାରେ ଆଶାରେ ଯୁଗ ବିତିଗଲା
କାଉର କୋଇଲି ବସା
କିଏ ସେ କାହାର ଅଜଣା ବେପାର
ଜୀବନ କପଟ ପାଶା

ଆଜି ଯେ ଉଜ୍ଜ୍ୱଳ କାଲି ସେ ମଳିନ
କପାଳ ଲିଖନ ଦଶା
ଅନାମରେ !
ଗାଦି ସଭିଙ୍କର ନିଶା ।।

ଗାଦିର ନିଶାରେ ପାଦ ଟଳମଳ
ଧନ ହେଲା ଦଣ୍ଡ ଲିତା
ଧନ ସାହାରାରେ ଗାଦି ଅରଜନ
ଗାଦିରୁ ସୁବର୍ଣ୍ଣ ସୀତା
ବାରବାଟି ବିଲ ଗୋଚର ପଡ଼ିଛି
ନେତ ଚରିଗଲେ ନେତା
ଅନାମରେ !
ଧନ୍ୟ ଆମ ସ୍ୱାଧୀନତା !

ନିଶା ଗରଜୁଛି ସୁଉ ସୁ ପବନ
ଆସୁଛି କେ ଅଶରୀରୀ
ବିଜୁଳି ଝଲସେ ଝୁଲେ କରବାଳ
ଘୋଡ଼ା ଟାପୁ ଶୁଭେ ଭାରି
କିଳିକିଳା ନାଦେ ନିଶା ଭାଙ୍ଗିବାକୁ
କଲ୍‌କୀର କିଆଁ ଡେରି
ଅନାମରେ !
ପାହାନ୍ତା ଆସୁଛି ଝଳି ।।



ନଈ ପହଁରା ମୋ ନଈ ପହଁରା
ଆଖି ପହଁରୁଛି ଗହଳି ସାରା ।।

ଅବୁଝା ଗହଳି ପଡ଼ିଛି ଟେରା
ଏକା ଏକା ଅଭିମାନ
ଛୁଆ କୋଇଲିର ବିକଳ କୁହୁ
ଆଷାଢ଼େ ଖୋଜେ ଫଗୁଣ
ଦୁଆର-ବନ୍ଧ ମୋ ଧୋଇଲୁ ଲୁହେ ତୋ
ଭିଜିଲା ଫେରନ୍ତି ବେଳା
ନଈ ପହଁରା ମୋ ନଈ ପହଁରା ।।

ଭିଜିଲା ସମୟ ମସିଆ ମାଟି
ଆଖି ହେଲା ଲୁହେ ପଚା
ଆସିବା ବେଳର ଶେଯ ସଜଡ଼ା
ଯିବାବେଳେ ଲୋଚାକୋଚା
କେଉଁ ଗରଜରୁ ମାଗିଲୁ କରଜ
କି ଅବା ଅଭାବ ହେଲା
ନଈ ପହଁରା ମୋ ନଈ ପହଁରା ।।

କେଉଁ ଅଭାବରୁ ଦୂରତା ବଢ଼େ
ଗାଆଁ ତୋର କାହିଁ କହ
ଦୁହିଁଙ୍କର ଗାଆଁ ଏକା ଗାଆଁ ପରା
କହିବାକୁ ଦୁଇ ଦେହ
ମୋ ହୃଦ ଝରିଲେ ତୋ' ପଲକ ଓଦା
ମନ ଶ୍ରାବଣ ଅସରା
ନଇ ପହଁରା ମୋ ନଇ ପହଁରା ।।



ପ୍ରଥମ ଶବଦ ପ୍ରଥମ ଅକ୍ଷର
ପ୍ରତୀକ ରୂପର ଓଁକାର ସୁନ୍ଦର
ଓଁକାର ସେପାରେ ଅନାହତ ସୁର
ସୁରର ସେପାରେ ଅନାମ ସୁନ୍ଦର
ସୁନ୍ଦର ଆହେ ସୁନ୍ଦର
କିମ୍ପାଇ ଏବେ ହୁନ୍ଦର ।।

ଜାତି ନନ୍ଦିଘୋଷ ଚଳିବକି
ଚଳାଇବା ରଥୀ ଦିଶୁଛି କି
ରଥ ଓଗାଳିବ ପଥ ଯେବେ
ଖସିବାର ଗଳି ଚିହ୍ନିଛ କି ?

ଧନ ଛଡ଼ା କିଛି ଭାବିଛ କି
ମଶାଣିର ଗନ୍ଧ ପାଇଛ କି
ଭାବ ବିନା ସବୁ ଅଭାବ ଯେ
ଯଶ ପାଇଁ ସବୁ ଛଞ୍ଚୁଛ କି ?

ସାଧବ ବାପୁଡ଼ା ବଣିକ କି
କିଣିପାରେ ଭାବ ପୀରତି କି
କଣାଏ ନିର୍ମାଲ୍ୟେ ଆତ୍ମା ତରେ
ଛପନ ଭୋଗରେ ମାତିଛ କି ?

ସୁନ୍ଦର ଆହେ ସୁନ୍ଦର
କିମ୍ପାଇ ଏତେ ହୁନ୍ଦର
ସୁନ୍ଦର କର ସଂସାର
ନ ପାରିଲେ ଗାଦି ଖାଲି କର ।



ଶରତର ଭସା ମେଘ ତଳେ
ଆଗାମୀର ଝଡ଼ ଫଣା ଟୋଳେ
ଯୁପ କାଠରେ ସଭିଙ୍କ ଗଳା
କାଳର ଖର୍ପର ଘୁରିବୁଲେ... ଚୁପ୍‌ଚାପ୍
ଚୁପ୍‌ଚାପ୍
ଚୁପ୍‌ଚାପ୍ ॥

ଅଣ୍ଟା ଗୁଞ୍ଜାଧନ ଖସିଯିବ
କିଏ ବା କାହାକୁ ଲୋଡ଼ିଯିବ
ଗରବ ଚାତୁରୀ ଖଞ୍ଜାଘର
ସବୁତ ଏଇଠି ହଜିଯିବ !
ଏକ ଅପରକୁ ଦୋଷୀ କରେ
ବିବେକ ବନ୍ଧକି ଗନ୍ତାଘରେ
ମନ୍ଦାରର ମାଳା ନାଇ ଗଳେ
ସଭିଏଁ ଚାଲିଛେ ମଶାଣିରେ... ଚୁପ୍‌ଚାପ୍
ଚୁପ୍‌ଚାପ୍
ଚୁପ୍‌ଚାପ୍ ॥

ଏବେଳେ ନୀରବେ ଚାଲିବାର
ଇତିହାସ ବୁକେ ଛୁରା ମାଡ଼
କବି-ପଣିଆର ମଣି ମୂଳ
ମୁହଁ ଖୋଲି ଦଣ୍ଡ ଘେନିବାର

ନୋହିଲେ ପ୍ରଭୁଙ୍କ ଜୟ ବୋଲି
ପଙ୍ଗତେ ବସିଥା ହାତ ମେଲି... ଚୁପ୍‌ଚାପ୍

ଚୁପ୍‌ଚାପ୍
ଚୁପ୍‌ଚାପ୍ ॥

ଶରଧା ବାଲିର ସିନ୍ଦୂର ଟୋପା
ଜାତିର ଭାଲେ ମଣ୍ଡାଇ ଦେଲି
ପତିତ ପାବନ ବାନା ମୋ ନାଲି
ରଙ୍ଗା ଅଧରର ହସ ବି ନାଲି

ଭାତ ଗଳିଯିବ ବୁଦ୍ଧିକୁ କାହିଁ
କୁମ୍ଭର ରକତ ଅନାମେ ନାଲି
ନାଲିରେ ନାଲି ଅନାମ ନାଲି ॥



କାଉ ନେଇଗଲା ଛଫଡ଼ା ଓଉ କି
ସଂସାରେ ଗୋଳ ଚହଳ
ଘୋଡ଼ା ବେପାରରେ ବେପାରୀ ଦୋଷୀ କି
ଘୋଡ଼ା ଖୁର ଟରଟର
ଅନାମରେ
ଲଗାମ କାହିଁ ଘୋଡ଼ାର ।।

ବିନା ଲଗାମରେ ଡେଇଁବା ସହଜ
ଘୋଡ଼ା ଚରିଗଲେ ଦେଶ
ନଣ୍ଡାକ୍ଷେତ ବାଡ଼ି ପାହାଡ଼ ଡଙ୍ଗର
ନଈ ବଣ ହେଲା ଶେଷ
ଅନାମରେ
ପୁଷମାସେ ସବୁ ନାଶ ?

ସବୁମଥା ପାଇଁ ଦର ଝୁଲୁ ଥାଇ
ଲକ୍ଷଣ ରେଖାକୁ ଚାହିଁ
ନିଆଁରେ ରେଖାର ବାଙ୍କ ବନିବାର
ଏ ଜାତି କି ଦେଖି ନାହିଁ
ଅନାମରେ
ସୁଖ କେଇ ଘଡ଼ି ପାଇଁ ?

ସୁଖର ବେଉସା ପସରା ମେଲେଇ
ସବୁ ହାଟେ ବସୁ ଥାଇ
ଦୁଃଖ ବେଉସାକୁ ହାଟୁଆ ନଥାଇ
ଆଖି ଥାଇ ଅନ୍ଧ ହୋଇ
ଅନାମରେ
ଭାବ କି ଅନ୍ଧ ହୁଅଇ ?

ଅନ୍ଧାରି ରାତିକୁ ଅଜଣା ପଥକୁ
ଅନ୍ଧାରକଣାଙ୍କ ପାଦ
ସପତ ଦ୍ୱୀପରେ ସପତ ଶୂନ୍ୟରେ
ଭାବ ଅଭାବର ଭେଦ
ଅନାମରେ
କେଉଁ ପୁଣ୍ୟେ ଏ ଶବଦ ?



କି ନ କଲ ବନ୍ଧୁ କି ନ କଲ
ମୋ ପଇସାରେ ମତେ
ନିଲାମ କଲ ।।
ବନ୍ଧୁତା ବନ୍ଧୁର ପଥ ପଥ ଅସୁମାର
ସମୟର ଗହୀରରେ କଥା ଅସୁମାର
ମିଛକୁ ଭଣ୍ଡିବା ପାଇଁ
କାନି ପତେଇଲ
ସତ ମଣି ବାଢ଼ିଦେଲି
ମୋ ଖାଇବା ଥାଳ
ମୋ ଭୋକ ବାହାନା ଦେଇ
ମତେ ଲୁଟିଲ
କି ନ କଲ ବନ୍ଧୁ କି ନ କଲ ।।

ରାଜାଙ୍କ ରାଜୁତି ଗାଥା ଖାଲି ଇତିହାସ
ପରଜାଙ୍କ ଭୋକ ନାହିଁ ସବୁ ପୁଷ ମାସ
ସାତ କିଳିଣୀ କବାଟ
ଖଞ୍ଜା ଫିଟିଯାଏ
ଶିକୁଳୀ ଚରଣେ ଥିଲେ
ନବଖଣ୍ଡ ହୋଏ
ଉଦ୍ଧାରୁଛ କହି ବେଡ଼ି
ଆଣ୍ଠେ ବାନ୍ଧିଲ
କି ନ କଲ ବନ୍ଧୁ କି ନ କଲ ।।

ଗାଦି ପାଇଁ ଯେତେ ଗୋଳ ନୀତି ନୁହେଁ କିଛି
ପଇସା କି ସବୁ କଥା କଥା ନୁହେଁ କିଛି
ବିଶ୍ୱାସ ଶିମିଳି ତୁଳା
ପବନେ ଉଡ଼ଇ
ଜୀବନ ବେଉସା ନୁହେଁ
ମରଣ ଲୋଡ଼ଇ
ମୋ ଲୁହକୁ ବିକି ମତେ
ସଉଦା କଲ
କି ନ କଲ ବନ୍ଧୁ କି ନ କଲ ।।

କପଟେ ଗୋଟିଏ ଦିନ ଦିନ କାହା ପାଇଁ
ପଲକେ ଜୀବନ ଶେଷ ମନା କାହା ପାଇଁ
ମନା କି ମାନଇ କେବେ
ଗଣିକାର ମନ
ନିରୀହ ମୁହଁ ହୁଏ କି
ସତୀଙ୍କର ଚିହ୍ନ
କାଚ ଘରେ ଥାଇ ନିଜେ
ଟେକା ଫିଙ୍ଗିଲ
କି ନ କଲ ବନ୍ଧୁ କି ନ କଲ ।।



ଦିନ ସରିଯାଏ ମନ ମରିଯାଏ
ବୟସ ଲାଗଇ ପିତା
ହାତ ପତେଇଲେ ଭିକ ତ ମିଳେନି
ଜଳେ ପଉରୁଷ ଚିତା
ମାନ ଅପମାନ ଗଲାଣି କେବେଠୁ
ଏବେ ଓଦା ଆଖି ପତା
କାଳିଆରେ
କିଏ ମୋର ମାତା ପିତା ।।

ମାତା ପିତା ଡାକି କେତେ ନଖୋଜିଲି
ମୁଁ ଯେ ବାରବୁଲା ଷଣ୍ଢ
କେଉଁ ମାଆର ବା' ଲୁହର ଚଅଁର
ଖରକିବ ବଡ଼ଦାଣ୍ଡ
ଶରଧା ବାଲିରେ ଉପହାସ ଖାଲି
ଓଲଟ ଧରୁଛି କାଣ୍ଡ
କାଳିଆରେ
ବାଳୁତ କାଳୁ ଛେଉଣ୍ଡ ।।

ଛେଉଣ୍ଡ ପିଲାଙ୍କୁ ପାହୁଣ୍ଡ ଅଜଣା
ଅମାନିଆଁ ପଣେ କିଣା
ଝୁଣ୍ଟିଆଳ ପଣେ ସୁଜନ ଅହୁଁରେ
କେଉଠି ବିବେକ ଠଣା

କିଏ ସାଧୁଜନ ଖୋଜିଗଲା ବୋଲି
ହେଲି ଅସାଧୁରେ ଗଣା
କାଳିଆରେ
କିଏ ବଣ, କିଏ ବଣା ।।

ବଣକୁ ଫୁଙ୍କିଲି ତୁଣ୍ଡ ପବନରେ
ବଣାକୁ ବିଞ୍ଚିଲି ହାତେ
ପୋଥିଙ୍କୁ ଫିଙ୍ଗିଲି ଝରଣା ସୁଅରେ
ବୁଦ୍ଧିକୁ କିଳିଲି ମାଥେ
ଗରବ ଚୁରିଲି ନିଜ ପାଦ ତଳେ
ନାମକୁ ଜାକିଲି ପଥେ
କାଳିଆରେ
ଅଧିଆ ପଡ଼ିଲି ପାଦେ ।।

ପରବତ ପାଦୁଁ ଆଣ୍ଠିଣ ଚାହିଁଲେ
ନୁଆଁଇ ନିଜର ଶିର
ମହୋଦଧି ତୀରେ ମହାମାନବଟି
ମଥାରେ ଛିଞ୍ଚଇ ନୀର
ଫିଟିଯିବା ପଦ ନ ଦେଲେ ଗଳାକୁ
ଅଫିଟା ଶବଦ ତୋର
କାଳିଆରେ
ତୁହି ମାତା ପିତା ମୋର ।।

ଧିଆନେ କଳପି ଅରୂପର ରୂପ
ରୂପକୁ ଖଞ୍ଜିଲି ଜପ
ନ ଥିଲୁ ତୁ କାହିଁ ପିତା ପକେଇଲି
ଅରଜିଲି ତିନି ପାପ
ତ୍ରାହି ନ ମିଳୁଣୁ ଲେଖନୀର ମୋହ
କିଏ ନେବ ଏବେ ଶାପ

କାଳିଆରେ
ମୋର ପାପ ତୋର ପାପ ।।

ଡରୁଥିବା ଯାଏଁ ଡର ହିଁ ଡରାଏ
ମରଣ ଚିପଇ କଣ୍ଠ
ବାଟ ଛାଡ଼ିଦିଅ ଗୀତ ଗାଇବାକୁ
ଭରସା ଜୁଇର କାଠ
କୋକେଇ ରଖିଲି ସଜେଇ ଦୁଆରେ
କୁମର ଅନା ଚାଟ
କାଳିଆରେ
ଦେଖିବୁ ଏଥର ହଟ ।।



ନାମ ପାଇଁ ବାଇ କିଏ
କିଏ ବଦନାମ
ନାମ ଜପି ଜପି କିଏ
ଅରଜଇ ନାମ
କିଏ ପୁଣି ମଥା ବିକି
କିଣେ କେତେ ନାମ
ନାମୀଙ୍କର ଦୁନିଆଁରେ
ଆମେ ଯେ ଅନାମ
ଆମେ ତ ବେଲାଲସେନ
କାଳର ଅବତାରେ
କୂର୍ମ ଶ୍ୟାମ ରାମ ।

ବେଲାଲସେନ ଦେଖଇ
ଘୂରେ ସୁଦର୍ଶନ
କାହା ଧନୁ କାହା ତୀର
ନାମକୁ ଅର୍ଜୁନ
ଭଡ଼ାଟିଆ କୀର୍ତ୍ତନିଆ
କରନ୍ତି ଭଜନ
ଭୋଜନ ମୁଠାଏ ପାଇଁ
ସବୁ ପ୍ରହସନ

କାଳ ଗରବ ଗଞ୍ଜାଇ
ଗାଦି ଦୁଇ ଦିନ ରେ
ସାକ୍ଷୀ ଶମଶାନ ।

ଗାଦିର କୋକୁଆ ଛାଏ
ଗ୍ରାମ କି ନଗର
ଭେଣ୍ଡିଆଙ୍କ ନିଶ କାହିଁ
ହେଲେଣି ବତର
ଡରକୁଳା ମରେ ସିନା
ବିଶା ଶହେ ବାର
ନିଡ଼ର ମରଇ ମିତ
ଥରୁଟେ ମାତର
ନୋହିଲେ ମୁହଁରେ ସୁନା
ମନରେ ଅଙ୍ଗାର ରେ
ପାଇକ ହିଁ ଚୋର
ଚୋର ଚୋର ଚୋର ଚୋର
ଡାକ ଦେଲେ ଚୋର
ଚୋରକୁ ଖୋଜିଲେ ଘର
ଭିତର ବାହାର
ସଭା ମେଲଣରେ କେତେ
କଥାର ଚାତର
ଚୋରକୁ ଦେଖିଲେ କାହିଁ
ଅନ୍ତର ଭିତର
ବଦଳି ଗଲେ ଅନ୍ତର
ଚୋର କିବା ଛାର ରେ
ଋଷି ରତ୍ନାକର ।।

ରୁଷିଲେ ଋଷି ସିନାରେ

ଏବେ ରୁକ୍ଷେ କିଏ
ନଈ ନ ଦେଖୁଁ ଖୋସଣି
ଖୋଲିଲେ ପୁତାଏ
ବଥା ଯାହା ତୋ ମନର
ମୋ ମନକୁ ଦହେ
କଥା ଅଛି ଅସୁମାରି
ବେଳ ଗଡ଼ିଯାଏ
କୁମର ମରୁ କାଳିଆ
ତୋଅର କି ଯାଏ ରେ
କଥା ରହିଯାଏ ।



ଗାଆଁ ଗାଆଁ ବୁଲି
କେତେ ଯେ ଖୋଜିଛି
ସାଇ ସାଇ ଘର ଘର
ଆଜି ଅଯାଚିତେ
ମିଳଇ ଯେବେଳେ
ଋତୁ ବିତିବାର ବେଳ ।।

ହାତ ପାପୁଲିରେ ପୋଛିବୁ କେତେ ବା'
କପାଳୁ ମୋ ଚିନ୍ତା ଝାଳ
ନିଜ ପାଇଁ ପରା ଦୁନିଆଁ ବାଇଆ
କପାଳ ଚିରିବେ ତୋର
ବିଶ୍ୱାସ ଆସଇ
ଏ ପଥ ଦେଇତ
ଭରସା ସେ ପଥେ ପାର ।।

ଏ ପାଶେ ଦେଖୁଛି ପଥର ପାଚେରୀ
ସେ ପାଶେ ଜଗିଛି କାଳ
ଦୁଇ ପାଶୁ ତୋତେ ଡାକରା ପଡ଼ିଛି
କାହିଁ ପତାଇବୁ ଥାଳ
କହି ନ ହୁଅଇ
ଯାହା ଓଠ ଫାଙ୍କେ
ଆଖିରେ ତା ମାଳମାଳ ।।

ଆସିଲେ ଫେରିଲେ ପଲକରେ ରୂପ
ଝଲସାଇ ଦଳଦଳ
ତୋ ସାଥେ ବା’ ମୋର କିବା ପରିଚୟ
ଆସୁ ଫେରୁ ଢ଼େଉ ତୁଲ
ରଖିବାର ଯାହା
ସାଇତି ରଖିଲି
ମୁଁ ଯେ ବେଳା ସାଗରର ।

ଜୀବନଟା ସାରା ହଳାହଳମୟ
ଯା କଣ୍ଠେ ଦେଲି ମୁଁ ସୁର
ସେ ବେଦରଦୀ ମୋ ଗଳାରେ ଛୁରୀ
ଚଳାଇଲେ ବାରବାର
କୁମ୍ଭର ଗଣୁଛି
ପାଦ ଚିପି ଚିପି
ବୟସ ବା କେତେ ଦୂର ।।



ମନର ଦାଗ କି' ପାଣିର ଗାର
ଲିଭେ ମୁହଁ ନେଲେ ଫେରେଇ
ହରେକ ଗାରଠୁ ତୋ ଦାଗ ଗହିରା
ସବୁ ଯାତନାକୁ ବଳଇ ।।

ମଉଳା ମାଳାରେ ହିଆର ବୟସ
ସଂଜ ପାହି ହେଲା ପାହାନ୍ତି
କଳଂକ କବାଟ ରାଧାକୁ ବାଧେନି
କାଠ କବାଟ କି ଜାଣନ୍ତି
ମୁରୁଖ ପବନ ନ ପଢ଼ି ଆଦେଶ
ଫୁଲ ସବୁ ନେଲା ଝଡ଼େଇ ।।

ବିବେକ ଖୋଜୁଥା ହାଟୁ ବାଇମନ !
ପାଉଁଝି ହ୍ରଦରେ ହଜେଇ
ଜୀବନ ଖୋଜୁଥା ମିଛ ସନମାନୁ
ପଗଡ଼ି ମାଟିରେ ଲୋଟେଇ
ମନ ଖୋଜୁଥାରେ ପାଗଳ ଭିଡ଼ରେ
ପୀରତି ଖୋଜୁଥା ସୋଗେଇ ।।

କୂଳର ଆଶାରେ ନଉକା ଭାସଇ
ଅକୂଳ ହେବ କି ସାଗର
ନୟନକୁ ଯେହ୍ନେ ପିଛୋଡ଼ା ଆବୋରି
ସମ୍ବନ୍ଧ ତେହ୍ନେ ମୋ ତୋହର
ଆସୁଛୁ ଯାଉଛୁ ବାରଣ ନୋହୁଛୁ
ତଥାପି ଆଶା ମୋ ଜଳଇ ।।



ମୋ ଆଖି ବିନା
କୋଉଥିରେ ମାପିବୁ ତୋ
ରୂପକୁ କହ ।।

ହୃଦୟେ ବାନ୍ଧିଲି ମାଳା ହେଲୁ ତୁ ମୁକୁଳା
ରତିରେ ଭିଜିଲା ଯେତେ ଗତିର ମେଖଳା
ପାହାନ୍ତିକୁ ପଚାରିଲୁ କି ଆନନ୍ଦ ଇଏ
କିଛି ନାହିଁ ଦେହେ ମୋର ତା ଧାରକ କିଏ
ମୋ ପ୍ରେମ ବିନା
କୋଉଥିରେ ମାପିବୁ ତୋ
ଗତିକୁ କହ ।।

ଆରତୀର ନିଆଁ ସାରା ଗମ୍ଭୀରା ଡାକଇ
କିଏ ସେ ପୂଜକ କାହା ପୂଜା କେ ଘେନଇ
ରକତର ବୁଝାମଣା ପାଣି ଫିଟିଯାଏ
ରଚିର ଦୁନିଆଁ ନିଶା ପଞ୍ଜରା ଥରାଏ
ମୋ ରଚି ବିନା
କୋଉଥିରେ ମାପିବୁ ତୋ’
ନିଶାକୁ କହ ।।

ଉବୁଟୁବୁ ସେ ନିଶାରେ ଶରଧା ବାଲିର
ଧୂଳିଭରା ଦେହ ସିନା ମନ ତ ଉଜ୍ଜ୍ୱଳ
ତୋ ମୋ ଶବଦ ଶୁଣି ସଂସାର ଚହଳ
ଆକାଶେ ନଥାଇ ମେଘ ନାଚଇ ମୟୂର

ମୋ ହଂସ ବିନା
କୋଉଥିରେ ମାପିବୁ ତୋ
ଶରଧା କହ ||

ଶରଧା ହଜିଛି ଆଜି ସଭିଏଁ ଭୋକିଲା
ଭୋକର ତାଣ୍ଡବ ତାଳେ ଲାଜ ବି ନଙ୍ଗଳା
ମତେ ଅଛି ଗାଇବାକୁ ମହାକାଳ ଗୀତ
ବାକୀ ଅଛି ବାଛିବାକୁ ମରଣର ମିତ
ମୋ ରକ୍ତ ବିନା
କୋଉଥିରେ ମାପିବୁ ତୋ
ମିତକୁ କହ ||



ଲୁଣର ପିତୁଳା ମାପିଲେ ସାଗର
ବାଲିରେ ଗଢ଼ିଲେ କଣ୍ଢେଇ ମନ୍ଦିର
ଗୋଟିଏ ଢ଼େଉକୁ ବୟସ ନାହିଁ
କହିବାକୁ ସିନା ନିଜେ ଚତୁର ॥

ବିକି ଭାଙ୍ଗି ଧନ ଯାହା ଥିଲା ତୋର
ନିଲାମ ଡକାଇ ନିଜ ଶବାଧାର
ଏକାଠି କରିଲୁ ଲୁହ ଦୁନିଆଁର
ରଚିବାକୁ ଯାହା ନିଜର କବର
ମାଟି ତ ମଶାଣି କାହିଁ ବେଭାର
କହିବାକୁ ସିନା ନିଜେ ଚତୁର ॥

ମରିନି ରାବଣ ସରିନି କଷଣ
ଗଡ଼ଜିତା ନାହିଁ ଗଢ଼ନ୍ତି ତୋରଣ
ଭିକାରୀ ଦେହରେ ସିଆଁ କପଡ଼ା
ଧନୀ ମନେ ଲୋଭ ମାରେ ଲହଡ଼ା
ଅବୁଝା ରହିଲା ଏ କାଳ ବେଳ
କହିବାକୁ ସିନା ନିଜେ ବତୁର ॥

ମସିଆ ଆକାଶ କାଦୁଆ ମାଟି
ବଡ଼ଦେଉଳରେ ଇଏ କି ଘଣ୍ଟି

କେତେ ପାହାଚରେ ଆନନ୍ଦ ମିଳେ
ଆନନ୍ଦ ଭୋଳେ କେ ତୋଳଇ କୋଳେ
କାହାକୁ ଖୋଜୁଛୁ କିଏ ତୋହର
କହିବାକୁ ସିନା ନିଜେ ଚତୁର ।।

ବଳିରେ ବଳି ମୋ ନକର କଳି
କାଲି ଆଣିଦେବି ସରୁ ଚକୁଳି
ଏଇ ବାହାନାରେ ଯୁଗ ବିତିଲା
ଯୁଗକୁ ଗଣ୍ଠିରେ କିଏ ବାନ୍ଧିଲା
ବେଳ କଟିଯାଏ ବେଳ କାହାର
କହିବାକୁ ସିନା ନିଜେ ଚତୁର ।।

ବିନ୍ଦୁରେ ଜନମ ବିନ୍ଦୁରେ ମରଣ
ମଝିଗାରଟିରେ ନାମ ହିଁ ଜୀବନ
ନିମିଷର ଯହିଁ କଳନା ନାହିଁ
ମହାକାଳ ମନ କିଏ ବୁଝଇ
ମନ ବୁଝିବାକୁ ଜପେ କୁମର
କହିବାକୁ ସିନା ନିଜେ ଚତୁର ।।



ପାହାଡ଼ ଏ ପାଖେ କୁହୁଡ଼ି ଖେଳଇ
ସେ ପାଖେ ଖେଳଇ ଖରା
ଦୁଇ ପାଶୁ ଦୁଇ କାହାଣୀ ଶୁଭଇ
କିଏ ଜୀଅନ୍ତା କେ ମରା
                ତୋ ବୁଝିବା କଥା ବୁଝା ଭଲରବୀ
                ମିଛେ ଜୀବନଟା ଗଲା ।

ଟଙ୍କା ଦୁଇ ପାଖେ ଛାପ ଦୁଇଟି
ଗୋଟିକେ ଦରବ ନାହିଁ
ଦୁଇ ପାଶେ ଥାଇ ଅଚଳ ହୋଇଲେ
ମଥା ପିଟିବୁ କି ନାହିଁ
                ଚଳ ଅଚଳ କି ବୁଝୁ ଭଲରବ
                ମନରୁ ଶବଦ କାହିଁ ?

ଚଳ ଅଚଳ ତ କାଳର କଥା
ବୁଝିବା ଲୋକକୁ ପାଖ
ମନ ଅଛି କାହିଁ କାହା ଖମାରେ
ଶବଦ କି ଝଡ଼ିପୋକ
                ବୁଝିବା ଲୋକ କେ ବୁଝା ଭଇରବୀ
                କାହା ପାଇଁ ମନ ଭେକ ।।

ଭିକ ଲାଗି ପରା ହରେକ ଭେକ
ବୁଝିବା ଲୋକ ନଙ୍ଗଳା
ଆପଣା ବଇରୀ ମନ ପିଆରୀ
ଭେକ ତ ଆପେ ମୁକୁଳା
        ନିଜକୁ ବୁଝିଲେ ବୁଝି ଥା ଭୈରବ
        ଖୋଜିବାର ଶେଷ ହେଲା ।।

କାହୁଁ ଶେଷ କାହୁଁ ଆରମ୍ଭ କହ
ଗୋଲେଇ ଡିମ୍ବର ସୀମା
ମୋ' ଠାରୁ ମଶାଣି କେତେ ଦୂରରେ
ଭୟ ଲାଗେ ବୋଲି ମନା
        ଭୟର ଆରମ୍ଭ କାହୁଁ ଭଇରବୀ
        ଜୀବନ କିପରି ସୀମା ।

ପହିଲି ତେଜ କି ଆକାଶର ସୀମା
ବାୟୁର ଆରମ୍ଭ କାହୁଁ
ମାଟିର ସୀମା ତୁ କୋଉଠୁ ମାପିବୁ
ଜଳ କି ଚିହ୍ନିଲୁ ନାହିଁ
        ତୋହରି ଭିତରେ ମଶାଣି ଭୈରବ
        ତୋତେ ଡରୁ ସିନା ତୁହି ।।

ଡର ଭାଙ୍ଗିବାକୁ ପୀରତି ଲୋଡ଼ିଲି
ଆବର ଲୋଡ଼ିଲି ଘର
ଘର ସଜା ଲାଗି ଅପରେ ଗଂଜିଲି
ସଂପତ୍ତି କରିଲି ଠୁଳ
        ରଜା କଲି କେତେ ମତେ ଲୋ ଭୈରବୀ
        ପୀରତି ନୋହିଲା କା'ର ।।

କେଉଁ ପୀରତିରେ ପହଡ଼ ଖୋଲେ
ଆରତୀ ଦିହୁଡ଼ି ଜଳେ

ଗହନ ବିଲର ଦୋ ମୁହାଁ ସାପ
ପଦୁଅଁ–ତୋଳାରେ ଖେଳେ
ପାଳିଆ କି କେବେ ଗାଏ ଭଇରବ
ଗାୟକ ନୀରବ ହେଲେ ।

ଗାୟନ ନ ଜାଣି ସରବେ ଗାଆନ୍ତି
ବାବରାପୁରୀର ଗୀତ
କୋକୁଆକୁ କେହି ନ ଦେଖି ଡରନ୍ତି
ଡାଟି କବାଟକୁ ଶୀତ
ମିଛର ଆରମ୍ଭ କାହୁଁ ଭଇରବୀ
ଅଦଭୂତେ ଉତ୍ପାତ ।।

ମିଛ ତ ମାୟାର ଚାଙ୍ଗୁଡ଼ି ଡାଲା
ସତ ଆକାଶ କୁସୁମ
ଉତ୍ପାତ ସବୁ କେତେ ଦିନକୁ
କହିଲେ ଶୀତେ ଗ୍ରୀଷମ
ଅଣ-ଅନ୍ଧାରରେ ବୋଇଲେ ଭୈରବ
ବୁଝଇ ନିଜେ ଅନାମ ।।

ବହୁ ଗଳି କନ୍ଦି ଭୂଆଁ ବୁଲିବୁଲି
ମଣିଷ ବୁଝେ ମଣିଷ
ସତ କହି ଦିନ କାଟିବା ପାଇଁକି
ପିଇବାକୁ ହୁଏ ବିଷ
ପ୍ରଶନ ଉତ୍ତର ନିଜେ ତୁ କୁମର
ଏଇ ତ ଜୀବନ ରାସ ।



ତୋ ଭାବରେ ମଜ୍ଜି ରଙ୍ଗ ମୋ ହଜିଲା
ତମାଳ ବଣରେ ହସ
କାର ବନବାସ ଚଉଦ ବରଷ
ଚଉଦ ଦିନ ମୋ ରାସ ॥

ଚଉଦ ଦିନରୁ ଚଉଦ ଫେଡ଼ିଲି
ବାକୀ ବଳିଗଲା ଦିନ
ଦିନ ରାତି କିଛି ବୁଝା ନ ପଡ଼ଇ
ଚଉଠି ରାତିର ମନ
ମାଧବୀ ଲଟାରେ ଗୁରେଇ ତୁରେଇ
ଅଣସରେ ମଧୁମାସ ॥

ଅଣସରେ ଦାଣ୍ଡୁ ଲୁଚିଗଲି ବୋଲି
ବୁଧେ ଭାବିନେଲେ ରୋଗୀ
ସିହାନ କରି ମୁଁ ନୀର ଛୁଏଁ ନାହିଁ
କିଆଁ କର ଖଳିଲାଗି
ତୋ ଅଧରପଣା ମୋ ଅଙ୍ଗେ ଭେଦଇ
ରାଜ ପଥେ ସହବାସ ॥

ରାଜ ପଥେ ମୋର ରଥ ଯାଏ ଗଡ଼ି
କହିବାକୁ ହୁଏ ଟଣା
ସାରଥୀ ଧରନ୍ତି ଘୋଡ଼ାର ଲଗାମ
ଡାହୁକର ମଥା ବଣା
ତୋ ଓ ମୋ ଭିତରେ ଶିହରଣ ନିଶା
ମାତାଲ ଗଳାର ଶୋଷ ।।

ମୁଁ ସିନା ମାତାଲ ତୋ ପୀରତି ଲାଗି
ଶରଧା ବାଲିରେ ଗୋଳ
ଶାସକେ ଶୋଷନ୍ତି ତୋ ରକତ ବୁନ୍ଦା
ତୋ ପାଇଁ ନାହିଁ ପଖାଳ
ଗତ ସନ ବନ୍ଧୁ ଯାହା ଆଶା ଥିଲା
ଏ ସନକୁ ସିଏ ବିଷ ।।

ତୋ ଦୁଃଖରେ ମୋର ହିଆ ଫାଟିଯାଏ
ଫାଟିଯାଉ ରାଜଦଣ୍ଡ
ଭାଙ୍ଗିପଡୁ ରାଜା ନନ୍ଦିଘୋଷ ରଥ
କାହିଁ ମୋର ଧନୁ କାଣ୍ଡ
ଧଳା ଘୋଡ଼ା ଏବେ ସଜାରେ କୁମର
ଏଥର ଛଳନା ଶେଷ ।।

# ଅନାମଙ୍କ ମଧ୍ୟରେ : ତଥାପି ନାମଟିଏ

## ଚିତ୍ତରଞ୍ଜନ ଦାସ

କବି କୁମାର ମହାନ୍ତି ମୋଟେ ଗୁଡ଼ିଏ ଲେଖିନାହାନ୍ତି। ସମ୍ଭବତଃ ଏକଥା ମଧ୍ୟ ଠିକ୍ ଯେ ସିଏ ଗଦ୍ୟ ତୁଳନାରେ ଢେର ବେଶି ପଦ୍ୟ ବା କବିତା ମଧ୍ୟ ଲେଖିନାହାନ୍ତି। ଏତେ ତ ପଦ୍ୟ ଲେଖିଲିଣି, ଏବେ କିଛି ଦିନ କିଛି ଗଦ୍ୟ ବି ଲେଖେ; ଅଥବା ଏତେ ତ ଗଦ୍ୟ ଲେଖିଲିଣି, ଏବେ କିଛି ଦିନ ପାଇଁ କିଛି ପଦ୍ୟ ମଧ୍ୟ ଲେଖିଲେ ହୁଅନ୍ତା ବୋଲି ସିଏ ମୋଟେ କେବେହେଲେ ସେହି ହିଡ଼ ଡେଇଁ ଏ କିଆରୀକୁ ଆସି ନଥିବେ ଅଥବା ଏ ହିଡ଼ଟିକୁ ଡେଇଁ ସେ କିଆରୀକୁ ଯାଇ ନଥିବେ। ସେହି ପ୍ରୟାସ ଆମର ଏହି ଚଳନ୍ତି ଯୁଗଟିରେ ମୋଟେ କମ୍ ଦୃଷ୍ଟିଗୋଚର ହୁଏନାହିଁ। ଖାଲି ଯେ ଆପଣାର ରୁଚିରେ ଗୋଟାଏ ପରିବର୍ତ୍ତନ ଇଚ୍ଛାକଲେ ସଂପୃକ୍ତ ଗଦ୍ୟ ବା ପଦ୍ୟ ଲେଖକମାନେ ଏଭଳି କରୁଛନ୍ତି ତା'ନୁହେଁ, ପାଠକମାନଙ୍କୁ ଚମକୃତ କରିଦେବା ନିମନ୍ତେ ମଧ୍ୟ କତିପୟ ଲେଖକ ତାହା କରୁଛନ୍ତି। ସ୍ୱ-ଅବଚେତନର ପ୍ରାୟ ଏକ ଫୁସୁଲାରେ ପଡ଼ି ସେଭଳି କରୁଛନ୍ତି। କୁମାର ମହାନ୍ତି ସେ ରଚନା କରିଥିବା ପଦ୍ୟ ତଥା ଗଦ୍ୟ ଉଭୟ ଭିତରୁ ହିଁ ସବାଆଗ ସ୍ୱୟଂ ଦିଶି ଯାଉଥିଲେ। ସବାଆଗ ପ୍ରେମୀଟିଏ, ସବାଆଗ ସମ୍ମତଟିଏ; – ପଦ୍ୟ କିମ୍ବା ଗଦ୍ୟ ଯାହା ହୋଇଥିଲେ ମଧ୍ୟ ସବାଆଗରେ କୁମାର ମହାନ୍ତି। ଆଖିରେ ଆଖିଏ ସଂବେଦନା, ଆପଣାକୁ ଦେଇ ଦେବାର ଏକ ନିତାନ୍ତ ସହଜ ଅଭିନୟଶୂନ୍ୟ ମଣିଷଟିଏ। ଏଇଟିକୁ ମଧ୍ୟ କ'ଣ ଆପଣ ସାହିତ୍ୟ ଭିତରେ ସାହିତ୍ୟିକର ଏକ ଶୈଳୀ ବୋଲି କହିବେ ?

ହଁ, ଗୋଟାଏ ଫରକ ଅବଶ୍ୟ ରହିଥିଲା। ନିଜର ରଚିତ ପଦ୍ୟଗୁଡ଼ିକୁ ସିଏ ଆବୃତ୍ତି କରି ପାରୁଥିଲେ, ଅନେକ ସ୍ଥଳରେ ଗାଇ ବି ପାରୁଥିଲେ। କବିତାର ସେହି ଆବୃତ୍ତି ନାମକ କର୍ମ କଦାପି ସବୁ କବିଙ୍କ ବେଳେ ଆଦୌ ସମ୍ଭବ ହୁଏନାହିଁ। କବିତା

